# କାଗଜ ନୁହେଁ, ଟଙ୍କା

ଲେଖକ :

ଶ୍ରୀ ଯମେଶ୍ୱର ତ୍ରିପାଠୀ

ପ୍ରକାଶକ :

ହସଖୁସି କାର୍ଯ୍ୟାଳୟ
ବୁଦ୍ଧମାଚୌକ, କଟକ-୨

କାଗଜ ନୁହେଁ, ଟଙ୍କା

ଲେଖକ :
ଶ୍ରୀ ଯମେଶ୍ୱର ତ୍ରିପାଠୀ

ପ୍ରଥମ ପ୍ରକାଶ : ୧୯୮୯
ନୂତନ ମୁଦ୍ରଣ : ୧୯୯୧

ପ୍ରକାଶକ :
ହସଖୁସି କାର୍ଯ୍ୟାଳୟ
କଟକ-୨

ମୁଦ୍ରଣ :
ଗୁରୁପ୍ରସନ୍ନ ପ୍ରେସ
ଝୋଲସାହି, କଟକ-୧

ମୂଲ୍ୟ : ପାଞ୍ଚ ଟଙ୍କା

**KAGAJA NUHEN, TANKA**

By
Sri Jameswar Tripathy

1st Publised— 989
Reprint – '991

Published by
HASAKHUSI KARYALAYA
Chandnichauk
Cuttack-2

**Price : Rs 5-00**

## ସୂଚୀ





# କାଗଜ ନୁହେଁ, ଟଙ୍କା

ପୁଷ ମାସ । ଦିନ ସେତେବେଳେ ଛୋଟ ହୁଏ । ରାତି ବଡ଼ ହୁଏ । ଦେଖୁଁ ଦେଖୁଁ ଦିନ କେତେବେଳେ ଗଳିଯାଏ ଆଉ ସନ୍ଧ୍ୟା ମାଡ଼ିଆସେ । ସନ୍ଧ୍ୟା ଯେତେବେଳେ ଆସେ ସେତେବେଳେ କ'ଣ ଏକା ଆସେ କି ? ସଙ୍ଗରେ ଧରି କରି ଆସେ କନକନିଆଁ ହାଡ଼ଭଙ୍ଗା ଶୀତ । ସେମିତିକା ଏକ ପୁଷମାସିଆ ଦିନରେ ସେହି ଶୀତରୁ ରକ୍ଷାପାଇବା ପାଇଁ ଅଧିକାଂଶ ଛୋଟ ପିଲଙ୍କ ଭଳି ପିନୁ ଓ ପିଙ୍କୁ ତାଙ୍କର ଅଜାଙ୍କୁ ଘେରି ନିଆଁ ପୁଆଁଇବାକୁ ବସିଲେ ।



ପିନୁ ଓ ପିଙ୍କୁ ଇସ୍କୁଲ୍‌ରେ ପାଠ ପଢ଼ନ୍ତି । ତାଙ୍କର ଅଜା ସରକାରୀ କାମ କରନ୍ତି । ସବୁଦିନେ ଦୁହେଁ ଆସି ଅଜାଙ୍କ ପାଖରେ

ଅଝଟ ଧରନ୍ତି—"ଆଜି ଆମକୁ ଗୋଟିଏ ଗପ କୁହ ।" ନାତି ଦୁହିଁଙ୍କର ମନ ରଖିବା ପାଇଁ ଅଜା ଗୋଟିଏ ଗୋଟିଏ ଗପ କହନ୍ତି ।

ସେଦିନ ଅଜା କହିଲେ—"ତୁମେସବୁ ନିଆଁ ପୁଆଁଇବା ପାଇଁ ଆଜି ତ କାଠିକୁଟା ରଖି ନାହିଁ ; ତେବେ ନିଆଁ ହେବ କିପରି ଯେ ଗପ କହିବି ? ମୁଁ ବୁଢ଼ା ଲୋକ । ନିଆଁ ନ ପୁଆଁଇଲେ ମୁଁ କ'ଣ ଏଡ଼େ ଶୀତରେ କଥା କହିପାରିବି ? ଦେଖୁନ, ମୋ ପାଟି କିପରି ଶୀତରେ ଠକ୍ ଠକ୍ ହୋଇ ଥରୁଛି !"

ପିନୁ ଅପେକ୍ଷା ପିଙ୍କୁ ବୟସରେ ବଡ଼ । ତେଣୁ ଟିକିଏ ଖଲାକ୍ । ଏତିକି କଥା ଶୁଣି ଦଉଡ଼ିଗଲା । ପାଠପଢ଼ା ଘରେ ତାହାର ଯେତେ ପୁରୁଣା ଲେଖା-ଖାତା ଥିଲା ଆଣି ପହଞ୍ଚିଲା । କହିଲା—"ଅଜା, ଏହାକୁ ଆଜି ନିଆଁରେ ପୋଡ଼ି ପୁଆଁଇବା । ଏଣିକି ତୁମର ତ ଆଉ ଗପ କହିବାପାଇଁ ଆପତ୍ତି ହେବ ନାହିଁ ?"

ଅଜା ପିଙ୍କୁର ଏ କାଣ୍ଡ ଦେଖି ହାତେ ଲମ୍ବ ଜିଭ କାଢ଼ି କହିଲେ—"କରେ ଏ କ'ଣ କରୁଛୁ ? ଏସବୁ କାଗଜଗୁଡ଼ାକୁ ଏତେ ଅଦରକାରୀ ବୋଲି କାହିଁକି ଭାବୁଛୁ ? କାଗଜରେ ଟଙ୍କା ନୋଟ୍ ତିଆରି ହେଉଛି ? ତେଣୁ ନୋଟ୍ ଯାହା କାଗଜ ସେଇଆ । କାଗଜର ମୂଲ୍ୟ ଅଛି । ଆଚ୍ଛା, ତୁମେ ଦୁହେଁ ବସ । ମୁଁ ତୁମ ଆଈକୁ ଡାକୁଛି । ସେ ଉହ୍ଲେଇରେ ନିଆଁ ଆଣିବେ । ସେହି ନିଆଁ ପୁଆଁଇବା । ଆଉ ତୁମକୁ ସେହି କାଗଜ ବିଷୟରେ ମୁଁ ଗପଟିଏ କହିବି ।"

ପିନୁ ଦଉଡ଼ିଗଲା । ଆଈଙ୍କୁ ଅଜାଙ୍କ ଆଦେଶ ଜଣାଇ ଦେଲା । ଆଈ ଚୁଲିରୁ ରଡ଼ ନିଆଁ ଉହ୍ଲେଇରେ ଆଣି ଥୋଇଦେଇ ଗଲେ । ଆଉ ତାକୁ ଜଳାଇବା ପାଇଁ ଗୁଣ୍ଡ କାଠଗୁଡ଼ାଏ ରଖି ଦେଇଗଲେ ।

ଅଜା ଗପ କହିବାକୁ ଆରମ୍ଭ କଲେ । ପିନୁ ଓ ପିଙ୍କୁ ମନଦେଇ ଶୁଣିଲେ । ଅଜା କହିଲେ—

"ସେ ଅନେକ ଦିନର କାହାଣୀ । ସେତେବେଳେ ଜଣେ ସମ୍ରାଟ ଚୀନ୍ ଦେଶରେ ଥିଲେ । ତାଙ୍କ ନାମ ହେଉଛି ହୋ-ତି । ଦିନେ ସେ ସମ୍ରାଟ ହଠାତ୍ ଚିନ୍ତିତ ହୋଇପଡ଼ିଲେ ।"

ପିନ୍ଟୁ ପଚାରିଲା -"ସମ୍ରାଟ କାହିଁକି ଚିନ୍ତିତ ହେଲେ ?"

ଅଜା କହିଲେ—"ସେତେବେଳେ ତ ଆଜିକାଲିଭଳି କାଗଜ ନ ଥିଲା ? ତେଣୁ ସେ ଭାବୁଥିଲେ ଯେ ଯେଉଁ ସରକାରୀ ଘୋଷଣାମାନ ବାଉଁଶ-ପାତରେ ଲେଖି ରଖୁଛନ୍ତି ଦରକାରବେଳେ ସେଗୁଡ଼ିକ କାମରେ ଲାଗିପାରୁ ନାହିଁ ।"

ପିନ୍ଟୁ ପ୍ରଶ୍ନ କଲା—"କାହିଁକି ଯେ—?"

ଅଜା କହିଲେ—"ବାଉଁଶ ପାତରେ ଲେଖା ହୋଇଥିବା ବିଷୟ ଅଳ୍ପ ଦିନରେ ନଷ୍ଟ ହୋଇଯାଏ । କ'ଣ କଲେ ଅନେକ ଦିନ ଯାଏ ସେ ତାଙ୍କର ନୀତିନିୟମ, ଆଇନ୍‌କାନୁନ୍‌ମାନ ଲେଖି ରଖିପାରିବେ, ସେଥିପାଇଁ ତାଙ୍କ ମନ୍ତ୍ରୀଙ୍କୁ ଏକ ଉପାୟ ବାହାର କରିବାକୁ ଆଦେଶ ଦେଲେ ।"

ପିଙ୍କୁ ପଚାରିଲା—"ମନ୍ତ୍ରୀ କ'ଣ କଲେ ?"

ଅଜା କହିଲେ—"ଷୋଳ ଗୁଣ ରଜାଙ୍କୁ ବତିଶ ଗୁଣ ମନ୍ତ୍ରୀ ପରି ସମ୍ରାଟଙ୍କର ମନ୍ତ୍ରୀ ବହୁତ ଚେଷ୍ଟା କରି କରି ପରୀକ୍ଷା କରି କରି ଜାଣିଲେ ଯେ 'ମଲବାରି' ଗଛର ଗଣ୍ଡିକୁ ଖଣ୍ଡ ଖଣ୍ଡ କରି କାଟି ତାହାକୁ ପାଣିରେ ଛୀଚି ପରି ଆଉଟି ଢାଳିଦେଲା ପରେ ତାହା ଏକପ୍ରକାର ଲେଖିବାର ମାଧ୍ୟମରେ ପରିଣତ ହୋଇପାରୁଛି । ଏହିଭଳି ଏକ ବକଲ ଭଳି ବସ୍ତୁକୁ ଗୁଡ଼ାଇ ସେ ସମ୍ରାଟଙ୍କୁ ଭେଟି ଦେଲେ । ଏହାକୁ ଦେଖିଲା ପରେ ସମ୍ରାଟଙ୍କ ଶୁଖିଲା ମୁହଁରେ ହସ ଫୁଟିଉଠିଲା ।"



ପିନୁ କହିଲା—"ସମ୍ରାଟ ମନ୍ତ୍ରୀଙ୍କୁ ତ ବହୁତ ଧନରତ୍ନ ପୁରସ୍କାର ଦେଇଥିବେ ?"

ଅଜା ହସି ହସି କହିଲେ—"ସେଥିରେ କ'ଣ ଟିକଏ ସନ୍ଦେହ ଅଛି ? ମୋର କହିବା କଥା—ଆଜକୁ ଅନେକ ବର୍ଷ ତଳେ ଅର୍ଥାତ୍ ୧୦୫ ଖ୍ରୀଷ୍ଟପୂର୍ବ ସମୟରେ ଆମେମାନେ ଦେଖୁଥିବା କାଗଜ ପ୍ରଥମେ ଚୀନ ଦେଶରେ ଜନ୍ମ ହୋଇଥିଲା । ଯେଉଁ କାଗଜକୁ ତୁମେ ଇଂରେଜୀରେ 'ପେପର୍' ବୋଲି କହୁଛ ତାହା ନାମ କାହିଁକି ଏପରି ହୋଇଛି ଜାଣିଛ କି ?"

ପିଙ୍କୁ କହିଲା—"ଆମେ ଜାଣିଥିଲେ ତୁମକୁ ପଚାରନ୍ତୁ କାହିଁକି ?"

ଅଜା ହସି କହିଲେ—"ବଡ଼ ବଗୁଲିଆଟାଏ । ଶୁଣ୍, ଇଜିପ୍ଟ ବୋଲି ଗୋଟିଏ ଦେଶ ଅଛି । ସେହି ଦେଶର ଲୋକମାନେ 'ପାପିରସ୍' ନାମକ ଏକପ୍ରକାର ଗଛର ବକଲକୁ ଲେଖିବା ପାଇଁ ବ୍ୟବହାର କରୁଥିଲେ । ସେଥିପାଇଁ କାଗଜ ନାମ ଇଂରାଜୀରେ 'ପେପର୍' ହୋଇଛି ।"

ପିଙ୍କୁ ପ୍ରଶ୍ନ କଲା—"ରଦ୍ଦି କାଗଜଗୁଡ଼ାକ ଏପରି କି ଦରକାରୀ ଜିନିଷ ଯେ ତୁମେ ସେଗୁଡ଼ାକୁ ପୋଡ଼ିଦେବାକୁ ମନା କଲ ?'

ଅଜା କହିଲେ—"ଆରେ ପିଲେ, ସେହି ଦିନଠାରୁ ଅଦ୍ୟାବଧି କାଗଜ ସମଗ୍ର ପୃଥିବୀରେ ଗର୍ବରେ ବିଚରଣ କରିବା ସଙ୍ଗେ ସଙ୍ଗେ ଅତ୍ୟାବଶ୍ୟକୀୟ ପଦାର୍ଥ—ଯଥା : ଲୁଗା, ତେଲ, ଚିନି ସହିତ ପ୍ରତି-ଯୋଗିତାରେ ଅଂଶ ଗ୍ରହଣ କରିପାରିଛି । ବର୍ତ୍ତମାନ କାଗଜ ଏକ ନିହାତି ଜରୁରୀ ବ୍ୟବହାର୍ଯ୍ୟ ଜିନିଷ ।"

ପିନୁ କହିଲା—"ଏହି କାଗଜ କ'ଣ ସେହିଦିନଠାରୁ ଏଇମିତି ରୂପରେ ରହିଆସିଛି ?"

ଅଜା କହିଲେ—"ଆରେ, ନାହିଁରେ । ସବୁରି ପରିବର୍ତ୍ତନ ହେଉଛି । ଆଉ କାଗଜର କ'ଣ ହୋଇନ ? ୧୭୫୦ ଖ୍ରୀ: ଅ: ପର୍ଯ୍ୟନ୍ତ କାଗଜ ତାହାର ପ୍ରାଚୀନ ରୂପରେ ରହିଆସିଥିଲା । ଏହା ପରେ ଫ୍ରାନ୍‌ସ ଏବଂ ହଲଣ୍ଡ୍‌ରେ ବୈଜ୍ଞାନିକମାନେ ଏହାର ରୂପରେ ସାମାନ୍ୟ ପରିବର୍ତ୍ତନ ଆଣିଲେ । ଊନବିଂଶ ଶତାବ୍ଦୀର ମଝିରେ କିମ୍ବା ଶେଷଆଡ଼କୁ ଜର୍ମାନ୍ ଏବଂ ଆମେରିକାର ଯୁକ୍ତରାଷ୍ଟ୍ରରେ କାଗଜ ଶିଳ୍ପରେ ପରିବର୍ତ୍ତନ ସୃଷ୍ଟି ହେଲା । ତାହା ଫଳରେ କାଗଜର ରୂପରେ ଉନ୍ନତି ଦେଖାଗଲା । ଏବେ ଏ ସବୁ ଏକ କାହାଣୀରେ ପରିଣତ ହୋଇଯାଇଛି ।"

ପିନୁ ପ୍ରଶ୍ନ କଲା—"କ'ଣ ସେହି କାହାଣୀ କହିଲ ଅଜା ?"

ଅଜା କହିଲେ—"ତୁମେ ଆଜି ଯେଉଁ ବାଜେ କାଗଜଗୁଡ଼ାକ ନିଆଁରେ ପୋଡ଼ିବା ପାଇଁ ଆଣିଥିଲ, ସେହି ବାଜେ କାଗଜଗୁଡ଼ାକ ଦିନେ ଭାରି ମୂଲ୍ୟବାନ ହେଲା । ଦେଖାଗଲା, ୟୁରୋପ ଓ ଆମେରିକାର ଖବରକାଗଜମାନେ ବଡ଼ କରୁଣ ସ୍ୱରରେ ନିବେଦନ କରୁଛନ୍ତି ଯେ ଛିଣ୍ଡା ଲୁଗାପଟା ସାଇତି ରଖନ୍ତୁ, ଫିଙ୍ଗନ୍ତୁ ନାହିଁ । କାରଣ କାଗଜ ତିଆରି କରିବା ପାଇଁ କଞ୍ଚାମାଲ ସେତେବେଳେ ସେସବୁ ଦେଶରେ

ଆଉ ମିଳିଲା ନାହିଁ । କେତେ ଦିନ ପରେ କାଠମଣ୍ଡ ତାହାର ସ୍ଥାନ ପୂରଣ କଲା । କାଗଜ ତିଆରି କରିବା ପାଇଁ ବହୁତ ପରିମାଣରେ ଏବଂ ଜୁନିତ ଧରଣର କାଗଜ ମଣ୍ଡ, ପାଇନ୍ ଓ ପୋଲାର ପ୍ରଭୃତି ଗଛ-ମାନଙ୍କରୁ ପ୍ରସ୍ତୁତ ହୋଇପାରିଲା ।"

ପିଙ୍କୁକୁ ଅଜାଙ୍କ କଥା ନୂଆ ଲାଗୁଥାଏ । ସେ ଆଶ୍ଚର୍ଯ୍ୟ ହୋଇ କହିଲା—"ଏଇ କାଠଗୁଡ଼ାକରୁ କ'ଣ କାଗଜ କେବଳ ତିଆରି ହେଉଛି ?"

ଅଜା ପିଙ୍କୁ କଥା ଶୁଣି ହସିଲେ । କହିଲେ—"ବଡ଼ ଉବ ଉବା ଟାଏ ତୁ । ଆରେ ଅଧୁଆ ଧରି ଶୁଣ । ତାହାପରେ ଅନ୍ୟାନ୍ୟ ଜାତୀୟ ଉଦ୍ଭିଦ, ଯଥା—ବାଉଁଶ, ଛଣପଟ, ଖୋଟ, ତୁଳା ପ୍ରଭୃତି ମଧ୍ୟ କଞ୍ଚାମାଲର ଅଭାବ ପୂରଣ କଲା । ଆଜିକାଲି ବୈଜ୍ଞାନିକ ପ୍ରଣାଳୀରେ ଯେକୌଣସି କାଠମଣ୍ଡରୁ ବିଭିନ୍ନ ପ୍ରକାରର କାଗଜ ପ୍ରସ୍ତୁତ ହୋଇ ପାରୁଛି । ଏଥିପାଇଁ ବ୍ୟବହୃତ ହେଉଛି ସଲ୍‌ଫାଇଟ୍, ସଲ୍‌ଫେଟ୍ ଏବଂ ସୋଡ଼ା । ଅବଶ୍ୟ କାଠମଣ୍ଡ ସହିତ କେତେକ ଯୌଗିକ ପଦାର୍ଥର



ମିଶ୍ରଣ ହେତୁ ସ୍ୱତନ୍ତ୍ର ଧରଣର କାଗଜ ପ୍ରସ୍ତୁତ ହେଉଛି । ଉଦାହରଣ ସ୍ୱରୂପ, ଏକ ଭାଗ ସଲ୍‌ଫାଇଟ୍ ଏବଂ ତିନି ଭାଗ କାଗଜ କାଠମଣ୍ଡ ଦ୍ୱାରା

ଏକ ବୈଜ୍ଞାନିକ ପ୍ରଣାଳୀ ଅନୁସାରେ 'ନିଉଜ୍‌ପ୍ରିଣ୍ଟ୍' କାଗଜ ଅର୍ଥାତ୍ ଯେଉଁ କାଗଜରେ ଖବର କାଗଜ ଛପାଯାଏ, ତାହା ପ୍ରସ୍ତୁତ ହେଉଛି । ଲେଖାଲେଖି ପାଇଁ ତୁମେମାନେ ବ୍ୟବହାର କରୁଥିବା ଧଳା କାଗଜ, ଛୁଣ୍ଡା କନା ଓ ସଲଫେଟ୍ ମଣ୍ଡର ସମ୍ମିଶ୍ରଣରେ ପ୍ରସ୍ତୁତ ହେଉଛି ।

ଏହାବୋଲି କେବଳ କାଠମଣ୍ଡ କାଗଜ ତିଆରି ପାଇଁ ଏକମାତ୍ର ଉପାଦାନ ନୁହେଁ । ବିଜ୍ଞାନ ଜଗତର ରସାୟନ ଶାସ୍ତ୍ର ଏହି ଶିଳ୍ପକୁ ସଦାସର୍ବଦା ସାହାଯ୍ୟ କରିଆସିଛି । କାଗଜ ଶିଳ୍ପର ବୈଷୟିକ ବିଜ୍ଞାନୀମାନେ ଷ୍ଟାର୍ଚ୍ଚ, ରେଜିନ୍, ସ୍ଲେଟ୍ ଗୁଣ୍ଡ, ଆଲମ୍ ପ୍ରଭୃତି ବିଭିନ୍ନ ଉପାଦାନକୁ କାଠମଣ୍ଡ ସହିତ ମିଶାଇ ତାହାକୁ ଆକର୍ଷଣୀୟ କରିପାରିଛନ୍ତି । ସେସବୁ ବିଷୟ ତୁମେ ଯେତେବେଳେ ବଡ଼ ହେବ ଭଲ ଭାବରେ ଜାଣିପାରିବ । ତେବେ କହିଲ ଦେଖି, କେତେ ପ୍ରକାର କାଗଜ ତୁମେମାନେ ବ୍ୟବହାର କରୁଛ ?"

ପିଙ୍କୁ ବଡ଼ପଡ଼ି କହିଲା –"ଆମେମାନେ ଲେଖିବା ପାଇଁ ଧଳା କାଗଜ, ଟାଇପ୍ କରିବା ପାଇଁ କାର୍ବନ୍ କାଗଜ, ଚିଠି ଲେଖିବା ପାଇଁ ପୋଷ୍ଟକାର୍ଡ୍, ଲଫାପା, ଖବରକାଗଜ ପାଇଁ ନିଉଜ୍‌ପ୍ରିଣ୍ଟ୍ ପ୍ରଭୃତି କାଗଜ ବ୍ୟବହାର କରୁଛୁ ।"



ଅଜା କହିଲେ—"ଆରେ ଏହାବ୍ୟତୀତ ଆହୁରି ମଧ୍ୟ ଅନେକ ପ୍ରକାରର କାଗଜ ଅଛି । ସେଗୁଡ଼ିକ ହେଲା—ଫୁଲତୋଡ଼ା ପ୍ରଭୃତି

ପ୍ୟାକିଂ କରିବା ପାଇଁ ଏକ ବିଶେଷ ଧରଣର କାଗଜ; ଗୁଡ଼, ମିଶ୍ରି ପ୍ରଭୃତି ବାନ୍ଧିବା ପାଇଁ ମୋଟା କାଗଜ ମଧ୍ୟ ବ୍ୟବହାର କରାଯାଏ । ପ୍ରତିଦିନ ଜିନିଷପତ୍ର ଆଣିବା ପାଇଁ କାଗଜ ବ୍ୟାଗ୍‌ରେ ବୈଜ୍ଞାନିକ ଗବେଷଣାଗାରରେ ଫିଲ୍‌ଟର୍ ପେପରରୂପରେ ଏହି କାଗଜ ବ୍ୟବହାର କରାଯାଉଛି । କାଗଜରେ ତିଆରି ମୋଟା ପଟା ହେତୁ ତୁମ ପଢ଼ାବହି ସୁନ୍ଦର ଭାବରେ ବନ୍ଧାଇ ହୋଇପାରୁଛି ।”

କାଗଜ ନ ଥିଲେ ଆମେ ଦଣ୍ଡେ ଚଳିପାରିବା ନାହିଁ । ଘର ଭିତରେ ଯେଉଁ ଆଜ୍‌ବେଷ୍ଟସ୍ ଶିଟ୍‌ର ଚଦରର ଛାତ ପଡ଼ୁଛି ତହିଁରେ ମଧ୍ୟ କାଗଜ ବ୍ୟବହୃତ ହେଉଛି । ତୁମେମାନେ ବିଶ୍ୱାସ କରିପାର କି ନ କରିପାର, ଆମେରିକାର ନ୍ୟୁୟର୍କ ସହରରେ ଗୋଟିଏ ଆଧୁନିକ ଯନ୍ତ୍ରପାତି ପ୍ରସ୍ତୁତକାରୀ ସଂସ୍ଥା କାଗଜରେ ଏକ ଥର୍ମୋମିଟର ତିଆରି କରିଛନ୍ତି, ଯାହାକି ମିନିଟ୍ କ'ଣ ସେକେଣ୍ଡ ସହ ତାଲ ରଖି ଦେହର ତାପ ମାପିପାରୁଛି । ଆଜି ଏହା ଦେଖିବାକୁ ସୁନ୍ଦର, ଶସ୍ତା ଓ ହାଲୁକା । ଜାପାନ୍‌ରେ କାଗଜରେ ଘର ତିଆରି ହେବା କଥା ତୁମେମାନେ ତ ତୁମ ଭୂଗୋଳ ବହିରୁ ପଢ଼ିଥିବ !”

ପିଙ୍କୁ ଓ ପିନ୍ନି ଆଶ୍ଚର୍ଯ୍ୟ ହୋଇ ଅଜାଙ୍କ ମୁହଁକୁ ଚାହିଁ ରହିଥାନ୍ତି—

ଅଜା ପୁଣି କହିଲେ ଚାଲିଥାନ୍ତି—“ଏହିପରି ବହୁତ ପ୍ରକାରରେ ବ୍ୟବହୃତ ହୋଇ କାଗଜ ଆଜି ଆମ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇ-ପଡ଼ିଛି । ଯେଉଁ ଦେଶ ଯେତେ ଅଧିକ କାଗଜ ଖର୍ଚ୍ଚ କରିପାରୁଛି, ସେହି ଦେଶ ସେତିକି ସଭ୍ୟ ବୋଲି ପରିଗଣିତ ହେଉଛି । ସାମାନ୍ୟ ଦୁଇ ଧାଡ଼ି ଚିଠିରୁ ଆରମ୍ଭ କରି ବିରାଟ ବିରାଟ ଗ୍ରନ୍ଥ ରଚନା ଏହି କାଗଜ ଉପରେ ନିର୍ଭର କରୁଛି । ଏହି କାଗଜ ଉପରେ ସରକାରୀ ମୋହରର ତାରତମ୍ୟ ହେତୁ ତାହାର ଦାମ୍ ଏକ ଟଙ୍କା ହେଉଛି ତ କେଉଁଠାରେ ଶହେ ଟଙ୍କାର ନୋଟ୍ ବୋଲି ଲୋକମାନେ ଖାତିର୍ କରୁଛନ୍ତି ।

କାଗଜର ଏହିପରି ମୂଲ୍ୟ ଥିବାବେଳେ ଓ ଆଜକାଲି ବଜାରରେ କାଗଜର ଦର ବଢ଼ୁଥିବାବେଳେ ତୁମେ ଏହି କାଗଜଗୁଡ଼ାକ ପୋଡ଼ି-ଦେବା କ'ଣ ଠିକ୍ ହେବ ?"

ପିନୁ କହିଲା—"ଏଗୁଡ଼ାକ ପରା ବାଜେ କାଗଜ ! ଆମେ ତହିଁରେ ଲେଖି ସାରିଲୁଣି ।"

ଅଜା କହିଲେ—"ଆରେ ବୋକା ଟୋକା, କାଲି ସକାଳୁ ବାଜେ କାଗଜ କିଣିବାକୁ କାଗଜବାଲା ଦୁଆରକୁ ଆସିଲେ ତାହାକୁ ଏଗୁଡ଼ାକ ଓଜନ କରି ବିକ୍ରି କରିଦେବ । ବଦଳରେ ପଇସା ପାଇବ, ଆଉ କାଗଜବାଲା ଏହାକୁ ନେଇ କାଗଜ କାରଖାନାରେ ବିକିଦେଲା ପରେ ଏଥିରୁ ପୁଣି ନୂଆ କାଗଜ ତିଆରି ହୋଇ ତୁମ ପାଖକୁ ଆସିବ । ତୁମେମାନେ ଏହିଭଳି ଜିନିଷର ମୂଲ୍ୟ ନ ବୁଝି ନଷ୍ଟ କରିବା ଏଣୁ ଠିକ୍ ହେଉ ନାହିଁ ।"



# ନର ନୁହେଁ କି ବାନର ନୁହେଁ

ଠିକ୍ ତୁମମାନଙ୍କ ଭଳି ପିଲାଟିଏ । ନାଁ ବିଶ୍ୱଜିତ୍ । ଡାକ ନାମ ତାର ପିଙ୍କୁ । ରୂପରେ ଦେଖିବାକୁ ଯିମିତି ଉଜ୍ଜଳ ତାଜିଲ, ତହୁଁ ବଳି ଗୁଣରେ । ସ୍କୁଲରେ ପାଠ ପଢ଼ୁଛି ନା ? ସେଥିପାଇଁ ସବୁକଥା ଜାଣିବାକୁ ତା'ର ଆଗ୍ରହ । ଯାହା ଦେଖିବ ତା ବିଷୟରେ ଭଲ କରି ନ ଜାଣିଲା ପର୍ଯ୍ୟନ୍ତ ସେ ଚୁପ୍ ହୋଇ ରହିପାରିବ ନାହିଁ । ଥରେ ସେ ତାଙ୍କ ଗାଆଁରୁ ମାମୁଁ ଘରକୁ ବୁଲି ଯାଇଥିଲା । ତା' ଅଜା କଟକରେ ଚାକିରି କରନ୍ତି । ସେତେବେଳକୁ ବାଲିଯାତ୍ରା ପଡ଼ିଆରେ ଗୋଟିଏ ସର୍କସ ଦଳ ଆସି ଖେଳ ଦେଖାଉଥାନ୍ତି ।

ଅଜା ନାତିକୁ ସଙ୍ଗରେ ଧରି ସର୍କସ୍ ଦେଖି ବାହାରିଲେ ।

ସର୍କସ୍ ନିକଟରେ ପହଞ୍ଚି ଟିକେଟ୍ କାଟି ଅଜାନାତି ଦୁହେଁ ଭିତରେ ପଶିଲେ । ବଡ଼ ତମ୍ବୁ ତଳେ ସର୍କସ୍ ହେଉଥାଏ ।

ସର୍କସ୍ ଆରମ୍ଭ ହେଲା । ଖେଳାଳିମାନେ ଖେଳ ଦେଖାଇଲେ । ଖେଳାଳିମାନଙ୍କ ସଙ୍ଗେ ଲୋକମାନଙ୍କୁ ହସାଇବା ପାଇଁ ଜୋକରମାନେ ମଧ୍ୟ ଅନେକ ମଜା କରୁଥାନ୍ତି । ସେହି ଜୋକରମାନଙ୍କ ଭିତରୁ ଜଣକୁ ଦେଖାଇ ଦେଇ ପିଙ୍କୁକୁ ଅଜା ପଚାରିଲେ—"କହିଲୁ, ପିଙ୍କୁ ଏଇଟି ମଣିଷ ନା ପଶୁ ?"

ପିଙ୍କୁ ବଡ଼ ଜାଣିଲା ପରି କହିଉଠିଲା—"ଅଜା ; ସେଇଟା ପରା ମଣିଷଟେ ! ସେଇମିତି ବେଶ ପିନ୍ଧା ହୋଇଛି ! ବୁଢ଼ା ହେଲଣି ବୋଲି ତୁମ ଆଖିକୁ ଆଉ ଭଲ ଦିଶୁ ନାହିଁ ।"

ଅଜା ଅଳ୍ପ ହସି କହିଲେ· "ଆରେ ନାଇଁରେ, ମୋ ଆଖି ଦୁଇଟାକୁ ବେଶ୍ ଦେଖାଯାଉଛି । ଏଇ ଯାହାକୁ ମଣିଷ ବୋଲି ଭାବୁଛୁ ସେ କିନ୍ତୁ ମଣିଷ ନୁହେଁ, ଗୋଟାଏ ପଶୁ ।"

ଆଶ୍ଚର୍ଯ୍ୟ ହୋଇ ପିଙ୍କୁ କହିଲା—"ପଶୁଟାଏ ?"

ଅଜା କହିଲେ—"ହଁ, ସେତିକି ତ ମଜା ! ମଣିଷ ନୁହେଁ ସିନା କିନ୍ତୁ ମଣିଷ କହିଲେ ଚଳେ । ସେମାନଙ୍କର ମଣିଷଙ୍କ ଭଳି ବୁଦ୍ଧି ନାହିଁ କିନ୍ତୁ କେତେକ କ୍ଷେତ୍ରରେ ତାଙ୍କର ବୁଦ୍ଧି ମଣିଷଙ୍କଠାରୁ ଭଲ । ସେମାନେ ପଶୁ । ଜଙ୍ଗଲରେ ରହନ୍ତି, ଫଳମୂଳ ଖାଆନ୍ତି, ଝରଣା ପାଣି ପିଅନ୍ତି । ମଣିଷ ଛେଳି, ମିରଗ, ମେଣ୍ଢା ପ୍ରଭୃତିଙ୍କୁ ମାରି ସେମାନଙ୍କର ମାଂସ ଖାଇବାକୁ ଭଲପାଏ । ସେମାନେ ପଶୁ ହେଲେ ବି ମାଂସ ଛୁଅନ୍ତି ନାହିଁ । ସେମାନଙ୍କର ଜୀବନର ହମବତକାଶ ଠିକ୍ ମଣିଷଙ୍କ ପରି କିନ୍ତୁ ଜୀବନଯାପନ ପ୍ରଣାଳୀ ମନୁଷ୍ୟଠାରୁ ଭିନ୍ନ । ସେମାନଙ୍କୁ ଧରି ନେଇ ମଣିଷ ସର୍କସରେ ଖେଳ ଦେଖାଇ ଆନନ୍ଦ ପାଏ । ବୈଜ୍ଞାନିକମାନେ ସେମାନଙ୍କୁ ନେଇ ଗବେଷଣା ଚଳାନ୍ତି । ଚଳଚ୍ଚିତ୍ରର ପ୍ରଯୋଜକମାନେ ସେମାନଙ୍କୁ ନେଇ ସିନେମାରେ ଅଭିନୟ କରାନ୍ତି । ଏଇ ଅଭିନୟ ପାଇଁ ସେମାନେ କିନ୍ତୁ ଯେଉଁ ଟଙ୍କା ପାରିଶ୍ରମିକରୂପେ ପାଆନ୍ତି, ତାହାକୁ ନେଇପାରନ୍ତି ନାହିଁ । ପ୍ରକୃତରେ ଯଦିଓ ସେମାନେ ନରମାନଙ୍କର ପୂର୍ବ ବଂଶଧର କିନ୍ତୁ ବାନର ନୁହନ୍ତି ।"

ପିଙ୍କୁ ତା ଅଜାଙ୍କଠାରୁ ଏତିକି ଶୁଣୁ ଶୁଣୁ କହିଲା—"ଅଜା, ସେମାନେ ନରଙ୍କର ପୂର୍ବ ବଂଶଧର କିନ୍ତୁ ବାନର ନୁହନ୍ତି—ଏ ତ ବଡ଼ ଆଚମ୍ବିତ କଥା ! ଆମକୁ ଆମ ଶିକ୍ଷକ କହିଥିଲେ ମାଙ୍କଡ଼ମାନେ ହେଉଛନ୍ତି ମଣିଷମାନଙ୍କର ପୂର୍ବ ବଂଶଧର ।"

ଅଜା କହିଲେ—"ସେମାନେ ବାନରଶ୍ରେଣୀସ୍ଥ ସତ, କିନ୍ତୁ ପ୍ରକୃତରେ ସେମାନେ ମାଙ୍କଡ଼ ନୁହନ୍ତି । ସେମାନଙ୍କୁ କୁହାଯାଏ

'ଶିମ୍ପାଞ୍ଜୀ' । ହଉ, ତୁ ମନ ଦେଇ ସର୍କସ୍ ଦେଖି ଯାଉ । ତୁ ଯେ କେବଳ ଶିମ୍ପାଞ୍ଜୀ ଦେଖିବୁ ତାହା ନୁହେଁ, ଏଠାରେ ଆଉ କେତେ-ଗୁଡ଼ିଏ ଜୀବଜନ୍ତୁଙ୍କୁ ଦେଖିପାରିବୁ । ଘରକୁ ଫେରିଲା ପରେ ରାତିରେ ତୋତେ ଶିମ୍ପାଞ୍ଜୀଙ୍କ ବିଷୟରେ କହିବି ।"

ସର୍କସ୍‌ରେ ପିଙ୍କୁ ହାତୀ, ବାଘ, ଘୋଡ଼ା, ଓଟ ପ୍ରଭୃତି କେତେ ଜନ୍ତୁଙ୍କୁ ଦେଖିଲା । ଖେଳ ଭାଙ୍ଗିବା ପରେ ଘରକୁ ଫେରି ଆସିଲା । ଅଜା ରାତିରେ ସିମିତି ଖାଇସାରି ବିଛଣା ଧରିବାକୁ ବାହାରିଛନ୍ତି, ଆଉ କି ପିଙ୍କୁ ତାଙ୍କୁ ଶୋଇବାକୁ ଛାଡ଼ିବଏ ?"

ଅଜା ଦେଖିଲେ, ଏ ନାତି ଟୋକା ମହା ବୁଦ୍ଧିଆ । ଯାହା ବୁଝିଥିବ ସେଇଆ । ମନେ ମନେ ଖୁସିଟେ ହେଲେ । ଭାବିଲେ ସବୁ ବିଷୟରେ ଜାଣିବାକୁ ଯେଉଁ ପିଲାମାନଙ୍କର ଆଗ୍ରହ ବଢ଼େ, ସେମାନେ ବଡ଼ ହେଲେ ନିଶ୍ଚୟ ପାଞ୍ଚ ଜଣରେ ଜଣେ ହୋଇ ଗଣା ହେବେ । ଅଜା କହିଲେ—

"ଆଫ୍ରିକା ବୋଲି ଗୋଟିଏ ଦେଶ ଅଛି । ସେହି ଦେଶରେ 'କଙ୍ଗୋ' ନାମରେ ଗୋଟିଏ ନଦୀ ଅଛି । ସେହି ନଦୀକୂଳରେ ଶିମ୍ପାଞ୍ଜୀ-ମାନେ ବହୁତ ଦେଖାଯାଆନ୍ତି । ସେମାନେ ଦଳ ଦଳ ହୋଇ ବାସ କରନ୍ତି । ସେମାନଙ୍କ ଭିତରେ କେହି ଦଳପତି ନ ଥାନ୍ତି । ପ୍ରତ୍ୟେକ ସ୍ୱାଧୀନ । ଜଙ୍ଗଲ ଭିତରେ ନିର୍ଭୟରେ ଚଲାବୁଲା କରନ୍ତି ।"

"ମଣିଷମାନଙ୍କ ଭଳି ସ୍ତ୍ରୀ ଶିମ୍ପାଞ୍ଜୀ ଆଠ ମାସରୁ ଦଶ ମାସ ପର୍ଯ୍ୟନ୍ତ ଗର୍ଭରେ ଛୁଆଟିକୁ ଧରି ରଖେ । ତାହା ପରେ ଗୋଟିଏ ନିରାପଦ ସ୍ଥାନରେ ଯାଇ ପିଲାଟିକୁ ଜନ୍ମ କରେ । ଏହାପରେ ସ୍ତ୍ରୀ ଶିମ୍ପାଞ୍ଜୀ ଜିଭରେ ଚାଟି ଚାଟି ତାହାର ଛୁଆଟିକୁ ସଫା କରେ । ଆଠ ଦଶ ଦିନ ପରେ ଜନ୍ମ ହୋଇଥିବା ଛୁଆଟିର ଆଖି ଖୋଲେ । ସେ ଦେଖିବାକୁ ସକ୍ଷମ ହୁଏ । ମଣିଷ ପରି ସେ ମଧ୍ୟ ତାହାର ମାଆଠାରୁ କ୍ଷୀର ଖାଇ



ବଢେ । ଦୁଇ ତିନ ବର୍ଷ ପର୍ଯ୍ୟନ୍ତ ଶିମ୍ପାଞ୍ଜୀ ପିଲା ତାହାର ମାଆ ଉପରେ ନିର୍ଭର କରିଥାଏ । ଶିଶୁ ଶିମ୍ପାଞ୍ଜୀ ମାଆ ଉପରେ ଲଦିହୋଇ ବସେ । ଜନ୍ମ ହେବାର ତିନି ମାସ ପରେ ତାହାର ଦାନ୍ତ ଉଠେ । ସେ ଦାନ୍ତରେ କିନ୍ତୁ ସେତେବେଳେ କିଛି ଖାଇପାରେ ନାହିଁ । ସଦା ସର୍ବଦା ମାଆ ପେଟତଳେ ଜାକିହୋଇ ସେ ଜଙ୍ଗଲରେ ଚଲାବୁଲା କରେ । ଦାନ୍ତ ଉଠିବାର ଆଠ ମାସ ପରେ ସେ ଖାଇବାକୁ ଆରମ୍ଭ କରେ । ମାଆ ଉପରେ ଚଢ଼ିବା, କୁଦିବା ସମୟରେ ସେ ଡିଆଁ ଡେଇଁ କରିଥାଏ । ଏକ ବର୍ଷର ହୋଇଗଲେ ମା ପେଟତଳୁ ବାହାରି ସେ ପାଖରେ ଥିବା ସମ-ବୟସ୍କଙ୍କ ସହ ଖେଳେ । ତିନି ବର୍ଷ ବେଳକୁ ଚଲାବୁଲା କରିବାକୁ ସମର୍ଥ ହୁଏ, ମାଆକୁ ତାହାର ପୂରାପୂରି ଛାଡ଼ିଦିଏ ।”

“ଶିମ୍ପାଞ୍ଜୀମାନେ ଦଳବଦ୍ଧ ହୋଇ ରହୁଥିଲେ ମଧ୍ୟ ସେମାନଙ୍କର କେହି ଦଳପତି ନ ଥାନ୍ତି । ସେମାନେ ଝରଣାର ପାଣିରେ ନିଜ ଦେହକୁ ଜଙ୍ଗଲର ପତ୍ର ଧରି ଘଷିମାଜି ସଫା କରି ଗାଧୁଆନ୍ତି ।”

“ଶିମ୍ପାଞ୍ଜୀମାନଙ୍କର ଅଳ୍ପସଂଖ୍ୟକ ଶତ୍ରୁ ଅଛନ୍ତି । ମନୁଷ୍ୟ ହିଁ ପ୍ରଧାନ ଶତ୍ରୁ । ସେମାନେ ମଣିଷ ବ୍ୟତୀତ ବାଘ ଓ ବିଷାକ୍ତ ସାପକୁ ଡରନ୍ତି । ଶତ୍ରୁକୁ

ଦେଖିଲେ ଖୁବ୍ ଜୋର୍‌ରେ ଚିତ୍କାର କରିଥାନ୍ତି । ଏହାଦ୍ୱାରା ସେ ଅନ୍ୟ ସାଥୀମାନଙ୍କୁ ସତର୍କ କରିଦେବା ସଙ୍ଗେ ସଙ୍ଗେ ସେମାନଙ୍କର ସକ୍ରିୟ ସହଯୋଗ ନେଉଛନ୍ତି । ତେବେ ଶିମ୍ପାଞ୍ଜୀମାନେ ପ୍ରାୟ ଦଳବଦ୍ଧ ହୋଇ ଆକ୍ରମଣ କରିଥାନ୍ତି । ଆକ୍ରମଣ କଲା ସମୟରେ ସେମାନେ ସେମାନଙ୍କର ଦେହର ଲୋମକୁ ଫୁଲାଇ ଦେଇ ଭୀଷଣକାୟ ହୋଇଉଠନ୍ତି । ପାଖରେ ପଡ଼ିଥିବା ବଡ଼ ବଡ଼ ପଥର ଓ କାଠଗଡ଼ମାନ ହାତରେ ଧରି ଖୁବ୍ ନିର୍ଦ୍ଦୟ ଭାବରେ ଶତ୍ରୁ ଉପରକୁ ଫିଙ୍ଗନ୍ତି । ସେମାନଙ୍କର ଲକ୍ଷ୍ୟ ସଦାବେଳେ ଅବ୍ୟର୍ଥ । ସେମାନଙ୍କର ଆକ୍ରମଣ ବିଷୟରେ ବହୁତ ମଜା କଥା ଅଛି— ।”

“କୋର୍ଟଲଣ୍ଡ୍ ନାମକ ଜଣେ ବୈଜ୍ଞାନିକ ଥିଲେ । ସେ ଶିମ୍ପାଞ୍ଜୀମାନଙ୍କ ସମ୍ବନ୍ଧରେ ଗବେଷଣା ଚଳାଇଥିଲେ । ସେମାନଙ୍କର ଶିକାର ପ୍ରଣାଳୀ ପରୀକ୍ଷା କରିବା ପାଇଁ କୋର୍ଟଲଣ୍ଡ୍ ଥରେ ତାଙ୍କର ସାଥୀମାନଙ୍କ ସହିତ ଜଙ୍ଗଲରେ କେତେ ଦିନ କଟାଉଥାନ୍ତି । ଦିନକର ସେ ଗୋଟିଏ



କୃତ୍ରିମ ବାଘ ତିଆରି କରି ତାହାକୁ ଶିମ୍ପାଞ୍ଜୀମାନଙ୍କର ଚଳପ୍ରଚଳ ହେଉଥିବା ସ୍ଥାନରେ ରଖିଦେଲେ, ନିକଟସ୍ଥ ଗଛରେ ବାନ୍ଧିଥିବା ମଞ୍ଚା

ଉପରେ ଜଗି ରହିଲେ । କିଛି ସମୟ ପରେ ସେ ଏକ ବିକଟ ଚିତ୍କାର ଶୁଣିବାକୁ ପାଇଲେ । ହଠାତ୍ ଘୂରିଁ ଦେଖନ୍ତି ତ ଦଳେ ଶିମ୍ପାଞ୍ଜୀ ଅର୍ଦ୍ଧ-ବୃତ୍ତାକାର ଭାବରେ ଠିଆହୋଇ ସେହି କୃତ୍ରିମ ବାଘ ଆଡ଼କୁ ପଥର ଓ କାଠଗଡ଼ମାନ ଫିଙ୍ଗିବାରେ ଲାଗିଥାନ୍ତି । ବାଘଟି ହଲଚଲ ନ ହେବାରୁ ଦଳେ ଯୁବକ ଶିମ୍ପାଞ୍ଜୀ ଯାଇ ବାଘଟିର ଲାଙ୍ଗୁଡ଼ ଧରି ଟାଣିଲେ । ତଥାପି ବାଘ ଯେତେବେଳେ କିଛି ଉଁ ଚୁଁ ହେଲା ନାହିଁ ସେତେବେଳେ ସେମାନେ ତାହାର ଲାଙ୍ଗୁଡ଼ ଧରି ବୁଲାଇ ବୁଲାଇ ଗୋଟିଏ ଗଛଗଣ୍ଡିରେ ପିଟିଦେଲେ । ଗଛ ଗଣ୍ଡିରେ ପିଟିହୋଇ ବାଘଟି ଭାଙ୍ଗି ଚୂରମାର୍ ହୋଇଗଲା । ତା ଦେହରୁ ବାଘ ଛାଲଟି ଖସିପଡ଼ିଲା । ଏହାପରେ ସେମାନଙ୍କ ଭିତରେ ଆନନ୍ଦର ଲହରୀ ଖେଳିଗଲା ।—ଏଥିରୁ ଜଣାପଡ଼େ ଯେ ପ୍ରଥମେ ଶତ୍ରୁକୁ ଉପଦ୍ରୁତ କରି ତାହାପରେ ସେମାନେ ଆକ୍ରମଣ କରନ୍ତି ଏବଂ ଦରକାର ହେଲେ ସମ୍ମୁଖ ଲଢ଼େଇରେ ଶତ୍ରୁକୁ ନିପାତ କରନ୍ତି ।”

“ଶିମ୍ପାଞ୍ଜୀମାନେ ଅନୁକରଣପ୍ରିୟ, ବୁଦ୍ଧିରେ ବିଚକ୍ଷଣ । ଥରେ ଚିଡ଼ିଆଖାନାରେ ଗୋଟିଏ ଶିମ୍ପାଞ୍ଜୀ ରହୁଥିବା ଯନ୍ତା ଆଗରେ ତା’ର ହାତଠାରୁ ଦୂରରେ ଗୋଟିଏ କଦଳୀ ଫେଣା ଝୁଲାଇ ଦିଆଗଲା, ତାହାକୁ ଖଣ୍ଡିଏ ବାଡ଼ି ଦିଆଗଲା । ଦେଖାଗଲା, ଶିମ୍ପାଞ୍ଜୀ ସେହି କଦଳୀ ଫେଣାକୁ ବାଡ଼ିରେ କେଞ୍ଚି ହଲାଇବାକୁ ଲାଗିଲା । ଫେଣାଟି ସହଜରେ ଦୋହୁଥିବା ହେତୁ ଅନ୍ୟ ହାତଟି ବଢ଼ାଇ ଶିମ୍ପାଞ୍ଜୀ କଦଳୀ ଫେଣାଟିକୁ ଚଟ୍ କରି ଧରିନେଲା, ଆନନ୍ଦ ମନରେ କଦଳୀତକ ଖାଇଲା ।—ଏଇଥିରୁ ତାଙ୍କର ବୁଦ୍ଧିର ସହଜାତ ବିଚକ୍ଷଣତା ଜଣାପଡ଼େ । ତୁ ବଡ଼ ହେଲେ ଏସବୁ ଜାଣିବୁ । ତଥାପି ତୋର ଜାଣିବାପାଇଁ କହୁଛି—ଆମେରିକାରେ ଶିମ୍ପାଞ୍ଜୀମାନଙ୍କୁ ନେଇ ଆଧୁନିକ ପ୍ରଣାଳୀରେ କଣ୍ଟାଚାମୁଚରେ ଖାଇବାକୁ ଦେବାକୁ ଶିକ୍ଷା ଦିଆଗଲାଣି । କେତେକ କ୍ଷେତ୍ରରେ ଶିମ୍ପାଞ୍ଜୀମାନେ ମଟରଗାଡ଼ି ମଧ୍ୟ ଚଳାଇ ଶିଖିଲେଣି ।”



ପିଙ୍କୁ ତାର ଆଖିଦୁଇଟାକୁ ଆଶ୍ଚର୍ଯ୍ୟରେ ବଡ଼ ବଡ଼ କରି ପଚାରିଲା "ସତେ ଅଜା ?"

ଅଜା ପୁଣି କହିଲେ "ଗୋଟିଏ ମଜା କଥା ଶୁଣିଲେ ନ ହସି ରହିପାରିବୁ ନାହିଁ । ଥରେ କୋର୍ଟ ଲଣ୍ଡ୍ ତାଙ୍କର ଜଣେ ଆମେରିକାନ୍ ବନ୍ଧୁଙ୍କ ଘରେ ଯାଇ ପହଞ୍ଚିଲେ । ଦେଖିଲେ, ବନ୍ଧୁଙ୍କ ରହିବା ଘର କବାଟ ବନ୍ଦ ଅଛି । ବନ୍ଧୁଙ୍କୁ ଡାକିବା ପାଇଁ ବାହାରୁ କଲିଂ ବେଲ୍ ଚିପିଲେ; ତାଙ୍କୁ ବିସ୍ମିତ କରାଇ ଗୋଟିଏ ଶିମ୍ପାଞ୍ଜୀ ଆସି କବାଟ ଫିଟାଇଦେଲା । କେବଳ ଯେ ଫିଟାଇଦେଲା ତାହା ନୁହେଁ, ତାହାଙ୍କ ହାତ ଧରି ନେଇ ବୈଠକ ଘରେ ବସାଇଦେଲା । କିଛି ସମୟ ବସିବା ପରେ ତାଙ୍କର ବନ୍ଧୁ ଆସିଲେ । ପରସ୍ପର ପରସ୍ପରକୁ ଅଭିବାଦନ କଲା-ପରେ କୋର୍ଟ ଲଣ୍ଡ ବନ୍ଧୁଙ୍କୁ ତାଙ୍କର ଏହି ଅଦ୍ଭୁତ ଭୃତ୍ୟ ପାଇଁ ଧନ୍ୟବାଦ ଦେଲେ । ତାଙ୍କର ବନ୍ଧୁ ଚାହା କରିବା ପାଇଁ ଶିମ୍ପାଞ୍ଜୀକୁ ନିର୍ଦ୍ଦେଶ ଦେଲେ । କୋର୍ଟ ଲଣ୍ଡ୍ ଦେଖିଲେ, ଚାହା ତିଆରି କରିବାର ସମସ୍ତ

ସରଞ୍ଜାମ ଆଣି ଟେବୁଲ ଉପରେ ରଖିଦେଲା ଶିମ୍ପାଞ୍ଜୀ ନିଜ ହାତରେ କପ୍‌ଟିଏ ଧରି ଆଉ ଗୋଟିଏ ଚୌକିରେ ବସିପଡ଼ିଲା ।”



“କୋଠ'ଲଣ୍ଡ୍ ହସି ହସି ତାଙ୍କର ବନ୍ଧୁଙ୍କ ବଣ୍ୟପ୍ରାଣୀକୁ ଏପରି ଭାବରେ ବସିବାର କାରଣ ପଚାରିଲେ । ବନ୍ଧୁଜଣକ ହସି ହସି କହିଲେ—“ପ୍ରତିଦିନ ସେ ଚାହା ତିଆରି ସରଞ୍ଜାମ (ଚିନି, ଦୁଧ, ଚାହା, କପ୍, ପିଆଲା) ସବୁ ଆଣି ମୋ ପାଖରେ ଯୋଗାଇଦିଏ ଏବଂ ମୁଁ ଚାହା ତିଆରି କରିସାରିବା ପରେ ମୋ ସହିତ ଚାହା ପିଏ । ସ୍ନେହ, ମମତା ଏବଂ ଆଦର ଦ୍ୱାରା ଏହିଭଳି ଦୁର୍ଦ୍ଦାନ୍ତ ବନ୍ୟ ଅଧିବାସୀଙ୍କୁ ମଧ୍ୟ ଆପଣାର କରିହୁଏ ।”

ପିଙ୍କୁ ଖିରି ଖିରି ହୋଇ ହସିଉଠିଲା । ଅଜା କହିଲେ—“ରାତି ତ ବହୁତ ହେଲାଣି, ତଥାପି ତତେ ଏତିକି କହୁଛି—ପଶୁ ହେଲେ ମଧ୍ୟ ଆଦର ପାଇଲେ ସେମାନେ ମଣିଷର ବହୁତ ଉପକାର କରିପାରନ୍ତି । ଶିମ୍ପାଞ୍ଜୀର ଲାଙ୍ଗୁଳ ନ ଥାଏ । ସେମାନେ ଦୁଇ ଗୋଡ଼ରେ ଚାଲନ୍ତି,

ଜଙ୍ଗଲର ଫଳମୂଳ ଖାଆନ୍ତି, ଶତ୍ରୁକୁ ଆକ୍ରମଣ କରନ୍ତି, ସନ୍ତାନ ପ୍ରସବ କରନ୍ତି, ସନ୍ତାନମାନଙ୍କୁ ଲାଳନ ପାଳନ କରନ୍ତି । ସବୁ ଠିକ୍ ଅବିକଳ ମଣିଷପରି କରନ୍ତି, କିନ୍ତୁ ସେମାନେ ମଣିଷ ନୁହନ୍ତି— ପଶୁ ।"

ଅଜା ଦେଖିଲେ—କଥା ସରିବାବେଳକୁ ପିଙ୍କୁ ତାଙ୍କ କୋଳରେ କେତେବେଳୁ ଶୋଇ ଘୁଂଗୁଡ଼ି ମାରିଲାଣି ।



## ଲୁଣ :

# ତା'ର ପୁଣି ଏତେ ଗୁଣ

ବାପୁ ଓ ଗୁଲେଇ ଭାଇ ଭଉଣୀ । ଦୁହେଁ କଟକର ଗୋଟିଏ ହାଇସ୍କୁଲରେ ପାଠ ପଢ଼ନ୍ତି । ପ୍ରତିଦିନ ସାଙ୍ଗ ହୋଇ ବସରେ ସ୍କୁଲକୁ ଯାଆନ୍ତି । ବସ୍‌ରେ ବସି ସ୍କୁଲକୁ ଯାଉଥିବାରୁ ଶୀଘ୍ର ଖିଆପିଆ ସାରି ତାଙ୍କୁ ବସ୍ ପାଇଁ ରାସ୍ତା କଡରେ ଅପେକ୍ଷା କରିବାକୁ ହୁଏ । ତାଙ୍କ ବୋଉ ବାତ ରୋଗୀ । ଶୀତ ପଡ଼ିବାମାତ୍ରେ ତାଙ୍କର ବାତ ବାହାରି ପଡ଼େ । ତେଣୁ ରୋଷାଇ କରିବାରେ କେବେ କେମିତି ବିଳମ୍ବ ହେଲେ ଗୁଲେଇ ତାଙ୍କୁ ସାହାଯ୍ୟ କରେ ।

ସେଦିନ ଡାଲି, ତରକାରି ପ୍ରସ୍ତୁତ ଗୁଲେଇ କରିଥିଲା । ବାପୁ ଖାଇ ବସିଲା । ତରକାରି ପାଟିକୁ ନେଇ ନେଇ ଥୁଥୁ କରି ଫୋପାଡ଼ି ଦେଇ କହି ଉଠିଲା—"ବୋଉ, ଏ ତରକାରି କିଏ କରିଛି ? ଏହାକୁ କଣ ମଣିଷ ଖାଇବ !"

ବୋଉ ରୋଷଘର ଭିତରୁ କହି ଉଠିଲେ—"କଣ ହୋଇଛି କିରେ ?"

ବାପୁ କହିଲା—ଥରେ ପାଟିରେ ଚାଖିଲେ ଜାଣିପାରିବୁ । ଏଡ଼ିକି ଲୁଣିଆ !

ଗୁଲେଇ ଉତ୍ତରକରି କହିଲା—"ମୁଁ ତ ନୂଆ କରି ରାନ୍ଧୁଛି ! ଲୁଣ ବେଶୀ ହେଲେ ମୋର ଦୋଷ, ଆଉ କମ୍ ହେଲେ ମଧ୍ୟ କେହି ଖାଇ-ପାରୁନ । ମୁଁ କଣ କରିବ କହିଲୁ ?"

ବାପୁ ରାଗିଉଠି କହିଲା—କଣ କହିବୁ ସେ କଥା ବୋଉକୁ ପଚାରିବୁ। ମୋର ବେଳ ହେଲାଣି। ମୁଁ ବାହାରକୁ ଯାଉଛି। ଏତିକି କହି ସେ ଭାତଥାଳି ପାଖରୁ ଉଠି ଚାଲିଗଲା।



ସନ୍ଧ୍ୟାକୁ ବାପା ଘରକୁ ଫେରି ସବୁ କଥା ଶୁଣିଲେ। ବାପୁ ରୁଷିକରି ସ୍କୁଲକୁ ଯାଇଥିବାରୁ ତାକୁ ବୁଝାଇଲେ। ଗୁଲେଇକୁ ଡାକି କହିଲେ—ମୋ ପାଖରେ ଦୁହେଁ ଆସି ବସ। ମୁଁ ତୁମ ଦୁହିଁଙ୍କୁ ଆଜି ସେହି ସାଧାରଣ ଲୁଣର ଅସାଧାରଣ ଗୁଣ କଥା କହିବି।

ଗୁଲେଇ ଓ ବାପୁ ଦୁହେଁ ଆସି ବାପାଙ୍କ ନିକଟରେ ବସି ପଡ଼ିଲେ।

ବାପା କହିବାକୁ ଆରମ୍ଭ କଲେ—ଏହି ଯେଉଁ ଲୁଣ ତୁମେ ଖାଉଛ, ଏହାର ଗୋଟିଏ ନୁହେଁ, କେତେ ଗୁଣ ଅଛି। ବିଭିନ୍ନ ଦେଶରେ ମଧ୍ୟ ଏହାର ବିଭିନ୍ନ ପ୍ରକାରର ବ୍ୟବହାର ଅଛି।



ବାପୁ କହି ଉଠିଲା— ଖାଇବା ପଦାର୍ଥରେ ଲୁଣର ବ୍ୟବହାର ଛଡ଼ା ଆଉ ଅଧିକା କଣ ଅଛି ଯେ ? ବାପା କହିଲେ—ଲୁଣ ଏପରି ଗୋଟିଏ ଜିନିଷ ଯାହା ଆମର ସାମାଜିକ, ଅର୍ଥନୈତିକ ଓ ଧର୍ମ କାମରେ ଲାଗେ । ଦୈନନ୍ଦିନ ବ୍ୟବହାରରେ ଧନୀକମାନଙ୍କଠାରୁ ଆରମ୍ଭ କରି ଯାଯାବରଙ୍କ ପର୍ଯ୍ୟନ୍ତ ସମସ୍ତେ ନିବିଡ଼ ଭାବରେ ସମ୍ପୃକ୍ତ । ସଭ୍ୟତାର କ୍ରମବିକାଶ ସଙ୍ଗେ ସଙ୍ଗେ ପଖାଳ କଂସାଠାରୁ ଧନୀମାନଙ୍କର ଖାଇବା ଟେବୁଲ ଉପରେ 'ସଲ୍ଟ ପ୍ୟାନ୍'ରେ ଲୁଣ ହିଁ ରହିପାରୁଛି ।

ଗୁଲେଇ ଆଗ୍ରହରେ ପଚାରିଲେ—ଧର୍ମ ସହିତ ଲୁଣର ସମ୍ବନ୍ଧ କଣ ?

ବାପା କହିଲେ—ଥରେ ଜର୍ମାନ୍‌ମାନେ ଗୋଟିଏ ଲୁଣିନଦୀ ପାଇଁ ଯୁଦ୍ଧ କରିଥିଲେ । ସେମାନଙ୍କର ବିଶ୍ୱାସ ଥିଲା ଯେ ସେହି ନଦୀ ଯେଉଁ ଭୂମି ଉପରେ ବହିଯାଉଥିଲା ସେହିଠାରେ ବସି ପ୍ରାର୍ଥନା କଲେ ଭଗବାନଙ୍କର ଦର୍ଶନ ମିଳିପାରିବ । ରୋମ୍ ଦେଶରେ ଗୋଟାଏ ଜାତିର ଲୋକ ଅଛନ୍ତି ଯେଉଁମାନେ ସେମାନଙ୍କର ପୁଅଝିଅମାନଙ୍କର ବିବାହ

ଠିକ୍ କଲାବେଳେ ଏକ ପବିତ୍ର ଖାଦ୍ୟ ତିଆରି କରନ୍ତି । ତହିଁରେ ଯଦି ଲୁଣ ପଡ଼ି ନ ଥାଏ ତେବେ ସେ ବିବାହ ଠିକ୍ ହୋଇପାରେ ନାହିଁ । ସେମାନଙ୍କର ଧାରଣା ଥାଏ ଯେ ବରପକ୍ଷ ଓ କନ୍ୟାପକ୍ଷ ଲୁଣ ଖାଇ-ସାରିଲା ପରେ ଆଉ ପରସ୍ପର ପ୍ରତି ଅବିଶ୍ୱାସୀ ହୋଇପାରିବେ ନାହିଁ । ଫାରସୀ ଭାଷାରୁ ଆସିଥିବା ଭାଷାରେ ଆମମାନଙ୍କ ଭିତରେ ବ୍ୟବହୃତ ହେଉଥିବା ଶବ୍ଦ "ନମକ୍ ହାରମ୍"ର ଅର୍ଥ ହେଲା 'କୃତଘ୍ନ' । ସେଥିପାଇଁ ଆମ ଓଡ଼ିଶାରେ ଗୋଟିଏ କଥା ଅଛି; ଯାହାର ଲୁଣ ଖାଇବ ତାର ସିନା ଗୁଣ ଗାଇବ !

ରୋମ୍ ଦେଶର ଇତିହାସରୁ ଜଣାଯାଏ ଯେ ସେଠି ସୈନ୍ୟ-ମାନଙ୍କୁ ଲୁଣ ଓଜନ କରିପାଇ ବେତନ ରୂପରେ ଦିଆଯାଉଥିଲା । ପରବର୍ତ୍ତୀ କାଳରେ ସେଥିପାଇଁ ଆମେସବୁ ଚାକିରି କରି ଯେଉଁ ଦରମା ପାଉଛୁ ତା'ର ନାମ ଇଂରେଜୀରେ ସାଲେରି ହୋଇଛି ।

ବାପୁ ପଚାରିଲା—ବାପା ଏ ସିନା ଅନ୍ୟ ଦେଶର କଥା । ଆମ ଦେଶରେ ଲୁଣ କିମିତି ଧର୍ମ ସହିତ ଜଡ଼ିତ, ସେ କଥା ତ କହିଲ ନାହିଁ ?

ବାପା କହିଲେ—ଆମ ଭାରତବର୍ଷରେ ମଧ୍ୟ ଧର୍ମକର୍ମର ଦୃଷ୍ଟିକୋଣରୁ ଲୁଣର ବ୍ୟବହାର ଦେଖିବାକୁ ମିଳେ । ମୁସଲ୍‌ମାନ ସମ୍ପ୍ରଦାୟ ମଧ୍ୟରେ ଶିଶୁର ଜନ୍ମଠାରୁ ସାତମାସ ହେବା ପରେ ଏକ ମାନସିକ ପର୍ବ ପାଳିତ ହୁଏ । ଏହାକୁ ଫାତିହା କୁହନ୍ତି । ଏହି ଫାତିହା ଦିନ ବନ୍ଧୁବାନ୍ଧବମାନେ ନିମନ୍ତ୍ରିତ ହୁଅନ୍ତି । ସେଦିନ ଚାଉଳ ଆଉ ଲୁଣ ମିଶି ଏକ ପ୍ରକାର ଖିରି ତିଆରି ହୁଏ । ଏହାକୁ ପିଲାକୁ ଚଟାଇ ଦିଆଯାଏ । ଆମର ଯିମିତି ନୂଆ ପିଲାମାନଙ୍କର ଅନ୍ନଛୁଆଁ ହୁଏ, ଏହାକୁ ସେହି ପ୍ରକାର କହିଲେ ଚଳିବ । ଗୁଜୁରାଟରେ ଏହି ପର୍ବକୁ "ଲୁଣ ଚଖା" ବା "ନମକ-ଚେଷ୍ଟି" ପର୍ବ କହନ୍ତି । ଆମର ମଧ୍ୟ ଏହାକୁ ଏବେ ଖିରଖିଆ କୁହାଯାଉଛି ।

ଗୁଲେଇ କହି ଉଠିଲୁ—ଲୁଣ କ'ଣ ଆମ ସ୍ୱାସ୍ଥ୍ୟ ପାଇଁ ନିହାତି ଦରକାର ? ତାକୁ ନ ଖାଇଲେ କ'ଣ ଚଳିବ ନାହିଁ ?

ବାପା ହସିଦେଇ କହିଲେ—ଲୁଣକୁ ସିନା ଆମେ ହେୟ ଦୃଷ୍ଟିରେ ଦେଖୁ ? କିନ୍ତୁ ତା ଅଭାବରେ ଆମର ଖାଦ୍ୟ ଆଦୌ ରୁଚିକର ହୋଇପାରିବ ନାହିଁ । କେତେକ ତୃଣଭୋଜୀ ପ୍ରାଣୀ—ଯେଉଁମାନେ କି ଖାଦ୍ୟରେ ପ୍ରଚୁର ପରିମାଣରେ ଲୁଣ ପାଇପାରନ୍ତି ନାହିଁ ସେମାନେ ଲୁଣ ମିଳୁଥିବା ସ୍ଥାନ ଖୋଜି ଖୋଜି ବୁଲନ୍ତି । ଯେଉଁ ସ୍ଥାନମାନଙ୍କରେ ଲୁଣ ପାଆନ୍ତି, ସେ ସ୍ଥାନସବୁ ଚାଟି ଚାଟି ଏପରି ଚିକ୍କଣ କରିଦିଅନ୍ତି



ଯେ ତାହା ମାର୍ବଲର ଏକ ପ୍ରସ୍ତର ଖଣ୍ଡ ପରି ମନେ ହୁଏ । ଶିକାରୀମାନେ ସେହି ସ୍ଥାନକୁ ଲୁଣଚଟା ସ୍ଥାନ କହନ୍ତି ।

ମଣିଷର ସ୍ୱାସ୍ଥ୍ୟ ପାଇଁ ଲୁଣ ଖୁବ୍ ଆବଶ୍ୟକ । ହଇଜା ରୋଗୀକୁ (ସାଲାଇନ୍) ଲୁଣପାଣି ଇଞ୍ଜେକ୍ସନ୍ ଦିଆଯାଏ । ବହୁତ ଝାଡ଼ା ହେବା ଫଳରେ ମଣିଷ ଦେହରୁ ଯେଉଁ ଲୁଣ ଅଂଶ କମିଯାଏ ତାହାକୁ ପୂରଣ



କରିବା ପାଇଁ ଏହି ଲୁଣପାଣି ଇଞ୍ଜେକସନ୍ ଦିଆଯାଏ । ଦେହରେ ଥିବା କ୍ଷତସବୁ ଶୀଘ୍ର ଭଲ ହେବାପାଇଁ ଡାକ୍ତରଖାନାମାନଙ୍କରେ (ସାଲଇନ୍) ଲୁଣିଆ ଗଜ ଦିଆଯାଏ ।

ତେବେ ଦେହର ଆବଶ୍ୟକ ପରିମାଣଠାରୁ ଅଧିକ ଲୁଣ ଖାଇଲେ ତାହା ଶରୀରର ଅନିଷ୍ଟ କରେ । ତେଣୁ ନେଫ୍ରାଇଟିସ୍ ନାମକ ଏକ ରୋଗରେ ଡାକ୍ତରମାନେ ଲୁଣ ଖାଇବାକୁ ବାରଣ କରନ୍ତି । ଖାଦ୍ୟରେ ବ୍ୟବହାର କରିବା ବ୍ୟତୀତ ଆମେ ଲୁଣକୁ ଅନ୍ୟ ପ୍ରକାରରେ ମଧ୍ୟ ବ୍ୟବହାର କରିଥାଉଁ । ଆମର ଖାଇବା ଜିନିଷ (ଆଚାର ପ୍ରଭୃତି)କୁ ଫିମ୍ପି ହବା ଦୁର୍ଗନ୍ଧରୁ ରକ୍ଷା କରିବା ପାଇଁ ଆମେ ଲୁଣକୁ ବ୍ୟବହାର କରୁ । ଚମଡ଼ାକୁ କଷ କଲାବେଳେ ଲୁଣର ଆବଶ୍ୟକ ହୁଏ ।

ବାପୁ ପଚାରିଲା—ଆମେ ଖାଉଥିବା ଲୁଣଛଡ଼ା ଆଉ କ'ଣ ଅନ୍ୟପ୍ରକାର ଲୁଣ ଅଛି ?

ବାପା କହିଲେ—ବୈଜ୍ଞାନିକ ଦୃଷ୍ଟିକୋଣରୁ ପରୀକ୍ଷା କରି ଦେଖାଯାଇଛି ଯେ ଆମେ ଖାଉଥିବା ଲୁଣ ଦୁଇଟି ବିଷାକ୍ତ ଜିନିଷର

ମିଶ୍ରଣରେ ତିଆରି ହୋଇଛି—ସୋଡ଼ିୟମ୍ ଓ କ୍ଲୋରିନ୍ । କିନ୍ତୁ ଭଗବାନଙ୍କର ଆଶୀର୍ବାଦ, ଏହା ଆମ ଜୀବନର ରକ୍ଷକ ହୋଇପାରିଛି । ପଞ୍ଜାବ ଦେଶର କାଲବାଗ୍ ପର୍ବତର ଲବଣାଞ୍ଚଳ ଲମ୍ବରେ ଦୁଇ ଶହ ମାଇଲ୍ ଏବଂ ଉଚ୍ଚତାରେ ଅଢ଼େଇ ହଜାର ଫୁଟ । ସେଠାରେ ମିଳୁଥିବା ପାର୍ବତ୍ୟ ଲୂଣକୁ ଚୂନା କରି ଖାଦ୍ୟରେ ବ୍ୟବହାର କରିହେବ । ଏହି ପାର୍ବତ୍ୟ ଲୁଣକୁ ଆମେ 'ସୈନ୍ଧବ' ଲୁଣ କହୁ । ଏହା କବିରାଜ ଔଷଧରେ ବ୍ୟବହୃତ ହୁଏ ।

ଗୁଲେଇ ପଚାରିଲା—ବାପା, ଏହି ଲୂଣ କିପରି ତିଆରି ହୁଏ ?

ବାପା କହିଲେ--ଭାରତବର୍ଷର ବମ୍ବେ, ଗୋଆ ଓ ମାନ୍ଦ୍ରାଜର ସମୁଦ୍ରକୂଳବର୍ତ୍ତୀ ସ୍ଥାନମାନଙ୍କରେ ଲୁଣ ତିଆରିପାଇଁ ପାନସବୁ ରହିଛି । ସେଥିରେ ସମୁଦ୍ରର ଜଳ ଭର୍ତ୍ତିହୋଇ ତାପ ସାହାଯ୍ୟରେ ଶୁଖେ । ପୁଣି କାଦୁଅ ମାଟିକୁ ବିଶୋଧନ କରାଯାଇ ଲୂଣ ବାହାର କରାଯାଏ । ଜୁଆରିଆ ସମୁଦ୍ର ନିକଟରେ ଲବଣ ପାନସବୁ ରହିଛି । ବଡ଼ ପାନ ତଳେ ଛୋଟ ପାନ, ଏହିପରି କେତୋଟି ପାନ ଥାଏ । ପ୍ରତ୍ୟେକ ପାନରୁ ଜଳ ତଳ ପାନକୁ ଆସ୍ତେ ଆସ୍ତେ ଆସିବା ଫଳରେ ପ୍ରତ୍ୟେକ ପାନରେ ମିଶି ରହିଥିବା ଲୂଣିଆ ମାଟି ତଳକୁ ତଳ ବସିଯାଏ । ଯେଉଁ ସମୁଦ୍ରରେ ଜୁଆର ନ ଥାଏ, ସେଠାରେ ଏହି ଲୂଣ ପାନସବୁ ରଖିବା ସମ୍ଭବପର ହୋଇପାରେ ନାହିଁ । ତେଣୁ ସେଠାରେ ସମୁଦ୍ର କୂଳରେ ଛୋଟ ଛୋଟ କିଆରିମାନ ଉଚ୍ଚାରୁ ନିମ୍ନ ଭାବରେ କରାଯାଇଥାଏ । ଆସ୍ତେ ଆସ୍ତେ ଉପର କିଆରିରୁ ପାଣି ତଳ କିଆରିକୁ ଛଡ଼ାଯାଏ । ଏହି ପ୍ରକ୍ରିୟାରେ ପାଣିସବୁ ଗଡ଼ିଯାଇ ପ୍ରଚୁର ସୂର୍ଯ୍ୟ ତାପରେ ବାଷ୍ପ ହୋଇ ଉଡ଼ିଗଲା ପରେ ଲୂଣ ସବୁ କିଆରିମାନଙ୍କରେ ଜମାଟ ବାନ୍ଧି ରହିଯାଏ । ଏହି ଜମାଟ ବାନ୍ଧିଥିବା ଲୂଣକୁ ଏକ ପ୍ରକାର ଉଙ୍କି ସାହାଯ୍ୟରେ ସଂଗ୍ରହ କରାଯାଇ ଛୋଟ ଛୋଟ ଗଦାମାନ ତିଆରି କରାଯାଏ । ଏହାପରେ



ଏହି ଛୋଟ ଛୋଟ ଗଦାକୁ ଏକତ୍ର କରାଯାଇ ବିଶୋଧନ କରାଯାଏ । ଆମେ ଯେଉଁ ପରିଷ୍କାର ଲୁଣ ଖାଉ ତାହା ଆହୁରି ପରିଷ୍କୃତ ହୋଇ ବଜାରକୁ ଆସେ । ସେଥିପାଇଁ ଲୁଣ ବ୍ୟବସାୟୀମାନେ ସଂଗୃହୀତ ମଇଳା ଲୁଣକୁ ପୁଣି ପରିଷ୍କାର ପାଣିରେ ମିଳାଇ ତାହାକୁ ପୁଣି ବିରାଟ ଚୂଲି-ମାନଙ୍କରେ ଗରମ କରନ୍ତି । ଆଜିକାଲି ବୈଦ୍ୟୁତିକ ଯୁଗରେ ନୂଆ ପ୍ରଣାଳୀରେ କଳରେ ଲୁଣ ପରିଷ୍କାର କରାଯାଉଛି ।

ଆମ ଓଡ଼ିଶାରେ ଗଞ୍ଜାମର ହୁମାରେ ଲୁଣ ତିଆରିପାଇଁ କିଆରିମାନ ହୁଏ ।

ବମ୍ବେର ଗୋଆ ହେଉଛି ଲୁଣ ଉତ୍ପାଦନର ଏକ ପ୍ରଧାନ କେନ୍ଦ୍ର । ଏହି କାରଖାନାରେ ମହିଳା ଶ୍ରମିକମାନେ କାମ କରନ୍ତି । ଲୁଣ କାରଖାନାରେ କାମ କରିବା କଷ୍ଟକର । ଲୁଣ କାରଖାନାରେ କାମ କରୁଥିବା ଲୋକମାନଙ୍କ ଆଖିରେ ଏକପ୍ରକାର ଘାଆ ହୁଏ, କିନ୍ତୁ ସମୁଦ୍ର କୂଳବର୍ତ୍ତୀ ଲୋକମାନଙ୍କର ଏ ଘାଆ ହୁଏ ନାହିଁ । କାରଣ ପିଲାଦିନରୁ ସେଇ 'ଲବଣାକ୍ତ ଜଳବାୟୁ'ରେ ରହିଆସିଥିବା ହେତୁ ସେମାନଙ୍କ ଦେହରେ ପ୍ରତିରୋଧ ଶକ୍ତି ଆସିଥାଏ । ଲୁଣ କାରଖାନାରେ

କାମ କରୁଥିବା ଲୋକମାନେ ଥଣ୍ଡା, ସର୍ଦ୍ଦି, ଆଣ୍ଠୁ ଗଣ୍ଠି ବାତ, ସ୍ନାୟବିକ ଦୁର୍ବଳତା ରୋଗରେ କମ୍ ପଡ଼ନ୍ତି ।

ଗୁଲ୍ ପଚାରିଲା—ବାପା, ଆମ ଦେଶରେ ଯେତେ ଲୁଣ ହୁଏ ତାହା କ'ଣ ଆମ ଦେଶରେ ବ୍ୟବହାର ହୁଏ ?

ବାପା କହିଲେ— ଆମ ଭାରତରେ ସାଧାରଣତଃ ଲୁଣ ଆମଦାନୀର ପରିମାଣ ତିନି ଅଯୁତ ଟନ୍ । ଏଥିରୁ ଏକ ଚତୁର୍ଥାଂଶ ଆମ ଦେଶରେ ବ୍ୟବହୃତ ହୁଏ । ଅବଶିଷ୍ଟ ଭାରତ ବାହାରକୁ ରପ୍ତାନି ହୁଏ । ଏହି ଲୁଣ ପାଇଁ ସତ୍ୟାଗ୍ରହ ଆରମ୍ଭ କରି ମହାତ୍ମା ଗାନ୍ଧୀ ଆମକୁ ସ୍ୱାଧୀନତା ଦେଇ ଯାଇଛନ୍ତି ।

ବାପୁ ଆଶ୍ଚର୍ଯ୍ୟରେ ଆଖି ବଡ଼ ବଡ଼ କରି କହିଲା—ଲୁଣର ଏତେ ଗୁଣ !

ବାପା ହସିଦେଇ କହିଲେ—ପ୍ରତ୍ୟେକ ସାଧାରଣ ଜିନିଷର ଅସାଧାରଣ ଗୁଣ ରହିଛି । କିନ୍ତୁ ତାହା ଯଦି ଅତି ହୁଏ କିମ୍ବା ଅଳ୍ପ ହୁଏ ତେବେ ଭଲ ଫଳ ହୁଏ ନାହିଁ । ଖାଇବା ଜିନିଷରେ ଲୁଣ ଅଧିକ ହେଲେ ଖାଇ ହୁଏ ନାହିଁ, କି କମ୍ ହେଲେ ପାଟିକୁ ସୁଆଦ ଲାଗେ ନାହିଁ । ତେଣୁ ସମପରିମାଣରେ, ଠିକ୍ ମାତ୍ରାରେ ବ୍ୟବହାର କରିବାକୁ ପଡ଼େ ।



# କାଳ ଯାଏ—କଥା ରହେ

ପୂପୁଲ୍ ଆଉ ଲିଟି । ଦୁହେଁ ଭାଇ ଭଉଣୀ । ପୁପୁଲ୍ ବଡ଼ । ଲିଟି ତା ଠାରୁ ସାନ । ଥରେ ଲିଟିକୁ ଜର ହେଲା । ଆଗରୁ କେବେ କେମିତ ଯଦି ଜର ହୋଇ ଥାଏ, ତେବେ ଦିନେ କି ଦୁଇଦିନ ଭିତରେ ଭଲ ହୋଇ ଯାଇଥାଏ । ଏଥର କିନ୍ତୁ ଜର ଆଦୌ ଛାଡୁ ନାହିଁ । ଆଠ ଦଶଦିନ ହୋଇ ଗଲାଣି । ନାତୁଣୀକୁ ଜର ହେବା ଖବର ଶୁଣି-ପାରି ସେମାନଙ୍କ ଅଜା ଆସି ପହଞ୍ଚିଲେ । ସେ ଜଣେ ଡାକ୍ତର । ସେ ଲିଟିକୁ ପରୀକ୍ଷା କଲା ପରେ କହିଲେ— ଟିକିଏ ରକ୍ତ ପରୀକ୍ଷା କରିବାକୁ ପଡ଼ିବ । ସେଥିରୁ କି ପ୍ରକାରର ଜର ଜାଣିହେବ ।

ଅଜାଙ୍କ ପାଖରେ ପୁପୁଲ୍ ଠିଆ ହୋଇଥିଲା । ଭାରି ଚତୁର ପିଲା ସେ । ସବୁକଥା ଜାଣିବା ପାଇଁ ତାର ଇଚ୍ଛା । ସେ ଅଜାଙ୍କୁ ପଚାରିଲା—ରକ୍ତରୁ କ'ଣ ଜର ବିଷୟରେ ଜାଣି ହେବ ?

ଅଜା କହିଲେ—ରକ୍ତରୁ କେବଳ ଜର ନୁହେଁ, ଆହୁରି ଅନେକ ରୋଗ ବିଷୟରେ ଜାଣି ହୋଇଥାଏ । ଏହା କହି ସେ ଆପଣା ବ୍ୟାଗରୁ ଯନ୍ତ୍ର କାଢ଼ି ଲିଟି ହାତରୁ ରକ୍ତ ଗୋଟିଏ କାଚ ଦେହରେ ନେଲେ । ତାପରେ କହିଲେ ମୁଁ ଡାକ୍ତରଖାନାରେ ରକ୍ତ ପରୀକ୍ଷା କରି ଆସିଲା ପରେ ତୋତେ ରକ୍ତ ବିଷୟରେ କହିବି ।

ଉପରଓଳକୁ ଅଜା ଆସି କହିଲେ—ରକ୍ତ ପରୀକ୍ଷାରୁ ଜଣା ପଡ଼ିଲା ଲିଟିକୁ ଟାଇଫଏଡ଼ ଜର ହୋଇଛି । ରୋଗ ତ ଜଣା ପଡ଼ିଲାଣି । ଏଣିକି ଔଷଧ ଖାଇଲେ ଭଲ ହୋଇଯିବ ।

ପୁପୁଲ୍ କିନ୍ତୁ ସକାଳ କଥା ମନେ ରଖିଥାଏ । ସେ ସଙ୍ଗେ ସଙ୍ଗେ କହିଲା—ଅଜା ମୋତେ ପରା ରକ୍ତ ବିଷୟରେ କହିବ ବୋଲି କହିଥିଲ ? କ'ଣ ଭୁଲିଗଲଣି ?

ଅଜା କହିଲେ -ହଉ ବସ୍ । ତୋତେ ମୁଁ କହୁଛି । ଆଗ ମୋ ପାଇଁ ତୋ ବୋଉ ଠାରୁ କପେ ଚାହା ଆଣିଲୁ ! ବୋଉକୁ କହିବୁ ଚାହାରେ ଚିନି ପକାଇବ ନାହିଁ । ଚାହା ପିଇ ସାରିଲା ପରେ ଯିନା ମୁଣ୍ଡରୁ ଗପ ବାହାର ହୁଣ୍ଡ ବାଟେ ଆସିବ ?

ପୁପୁଲ୍ ପଚାରିଲା—ଅଜା ତୁମ ଚାହାରେ ଚିନି ପଡ଼ିବ ନାହିଁ କାହିଁକି ?

ଅଜା କହିଲେ—ମୋ ରକ୍ତରେ ଚିନି ଅଂଶ ଅଧିକା ଅଛି । ତେଣୁ ମୋତେ ଯେଉଁ ବେମାରି ହୋଇଛି, ସେଥିରେ ଚିନି ଖାଇବାକୁ ମନା କରାହୋଇଛି । ତୁ ଯାଇ ଆଗ ଚାହା ଆଣ । ତାପରେ ଗପ ଆରମ୍ଭ କରିବା ।

ଅଜା ଇତିମଧ୍ୟରେ ପୋଷାକ ପତ୍ର ବଦଳାଇ, ହାତଗୋଡ଼ ଓ ମୁହଁ ଧୁଆ ଧୋଇ ହୋଇ ଆସି ବସିଯାଇଥାନ୍ତି । ପୁପୁଲ୍ ହାତରେ କପେ ଚାହା ଆଣି ପହଞ୍ଚିଲା । ଅଜା ତା ହାତରୁ ଚାହା କପ୍‌କୁ ନେଇ ନେଇ କହିଲେ— ବୁଝିଲୁ ପୁପୁଲ୍, ନଈ ଦେଖିଥିବୁ ତ ? ସେଇ ନଈରେ ଯିମିତି ଅନବରତ ପାଣି ବହି ଚାଲିଥାଏ, ସିମିତି ତୋ ଦେହରେ ଥିବା ଶିରା, ମହାଶିରା ମାନଙ୍କରେ ରକ୍ତର ସ୍ରୋତ ବହି ଚାଲିଛି । ନଈର ପାଣି ଅପରିଷ୍କାର ହୋଇଗଲେ ଆମେ ତାକୁ ପରିଷ୍କାର କରୁ । କିନ୍ତୁ ଦେହ ଭିତରେ ରକ୍ତ ସବୁ ଅପରିଷ୍କାର ହେଲେ ସିଏ କିମିତି ସଫା ହୁଏ କହିଲୁ ?

ପୁପୁଲ୍ କହିଲା—ମୁଁ କ'ଣ ଜାଣିଛି ଅଜା ?

ଅଜା କହିଲେ—ଆମ ଦେହ ଭିତରେ ଇମିତି ଗୋଟିଏ ଯନ୍ତ୍ର ରହିଛି ଯିଏ କି ଦୂଷିତ ରକ୍ତକୁ ସଫା କରିବାରେ ଲାଗିପଡ଼ିଛି, ଆଉ ସଫା ରକ୍ତକୁ ଶରୀରର ଅନ୍ୟ ଅଂଶକୁ ପଠାଇ ଦେଉଛି । ଅଜା ପ୍ରଶ୍ନ କଲେ ଆଚ୍ଛା କହିଲୁ—ଆମ ଶରୀରର ଉତ୍ତାପ କେତେ ?

ପୁପୁଲ୍ କହିଲା—ଅଠାନବେ ପଏଣ୍ଟ ଚାରି ଡିଗ୍ରୀ ଫାରନ୍ ହିଟ୍ ।

ଅଜା କହିଲେ—ଫାରନ୍ ହିଟ୍ ଥର୍ମୋମିଟରରେ ମାପିଲେ ଦେହରେ ଥିବା ଉତ୍ତାପର ପରିମାଣ ଜାଣିହେବ । ଏହି ଉତ୍ତାପକୁ କମ୍ କିମ୍ବା ବଢ଼ୁତ ଏଇ ରକ୍ତ ମଧ୍ୟ କରିଥାଏ । ଆମେମାନେ ଯେଉଁସବୁ ଖାଦ୍ୟ ଖାଉ ତାହା ପାକସ୍ଥଳୀରେ ହଜମ ହେଲା ପରେ ତାର ସାରାଂଶ



ରକ୍ତ କୋଷିକା

ରକ୍ତରେ ମିଶି ଶରୀରର ବିଭିନ୍ନ ଅଂଶକୁ ଯାଇଥାଏ । ରକ୍ତକୁ ନେଇ ଅଣୁବୀକ୍ଷଣ ଯନ୍ତ୍ରରେ ପରୀକ୍ଷା କଲେ ସେଥିରେ ଥିବା ବିଭିନ୍ନ କୋଷ ସବୁ

ଦେଖା ଯାଆନ୍ତି । ସେଗୁଡ଼ିକ ହେଲେ ଲୋହିତ ରକ୍ତ କଣିକା, ଶ୍ୱେତ ରକ୍ତ କଣିକା ଆଉ ଅଣୁ ଚକ୍ରିକା ଇତ୍ୟାଦି । ଏମାନଙ୍କର ସଂଖ୍ୟା ମଧ୍ୟ ରକ୍ତରେ ନିର୍ଦ୍ଦିଷ୍ଟ ପରିମାଣରେ ରହିଥାଏ । ସେମାନଙ୍କ ସଂଖ୍ୟାରେ ଯଦି କମ୍ ବଢ଼ୁତି ହୁଏ, ତେବେ ଅନେକ ପ୍ରକାରର ରୋଗ ହୋଇଥାଏ । ସେଥିପାଇଁ ରୋଗ ଚିହ୍ନିବା ପାଇଁ ବିଭିନ୍ନ ପ୍ରକାରର ରକ୍ତ ପରୀକ୍ଷା ମାନ ବୈଜ୍ଞାନିକମାନେ ଉଦ୍‌ଭାବନ କରିଛନ୍ତି ।

ଶରୀରରେ ଲୋହିତ ରକ୍ତ କଣିକା କମିଗଲେ ରକ୍ତହୀନତା ରୋଗ ହୁଏ । ଶ୍ୱେତ ରକ୍ତ କଣିକା କମିଗଲେ ବିଭିନ୍ନ ପ୍ରକାରର ରୋଗ ହୁଏ । ଅଣୁ ଚକ୍ରିକା କମିଗଲେ ବହୁତ ରକ୍ତ ସ୍ରାବ ହୋଇଥାଏ । ଲସିକାରେ ଚିନି ପରିମାଣ ବଢ଼ିଗଲେ ମଧୁମେହ ରୋଗ ହୁଏ । ସେହି ରୋଗୀମାନଙ୍କ ପାଇଁ ମିଠା ଖାଇବା ମନା । ସେଥିପାଇଁ ମୁଁ ଚାହାରେ ଚିନି ପକାଇବା ଲାଗି ମନା କରିଥିଲି ।

ପୁପୁଲ୍ ପଚାରିଲା—ଅଜା କହିଲ ଦେଖି ଏଇ ରକ୍ତ ସଞ୍ଚାଳନ ପ୍ରକ୍ରିୟାକୁ ଆମ ଦେହ ଭିତରେ କିଏ ପ୍ରଥମେ ଆବିଷ୍କାର କରିଥିଲେ ?

ଅଜା କହିଲେ—ବେଶ୍ ଖାସା କଥାଟିଏ ଏତେବେଳକୁ ପଚାରିଲୁ । ହଉ, ମନଦେଇ ଶୁଣ୍—

ସାତ ପୁଅ ଆଉ ଗୋଟିଏ ଝିଅ ଭିତରେ ଯେଉଁ ପୁଅଟି ସମସ୍ତଙ୍କଠାରୁ ଉଚ୍ଚତାରେ ସାନ, ତାହାର ନାମ ବାପା ଦେଇଥିଲେ— 'ଉଇଲିୟମ୍' । ଆମମାନଙ୍କ ନାମ ପଛରେ ଯେପରି କିଛି ସଂଜ୍ଞା, ଯଥା— ତ୍ରିପାଠୀ, ଦାସ, ମହାନ୍ତି, ମହାପାତ୍ର ପ୍ରଭୃତି ଅଛି, ସେହିପରି ଉଇଲିୟମ୍‌ଙ୍କର ଉପାଧି ଥିଲା 'ହାର୍ଭେ' ।

ପନ୍ଦର ଶହ ଅଠସ୍ତରୀ ମସିହା ଏପ୍ରିଲ୍ ମାସ ପହିଲା ଦିନ ଉଇଲିୟମ୍ ଜନ୍ମଗ୍ରହଣ କରିଥିଲେ । ଏପ୍ରିଲ୍ ପହିଲାକୁ ଆମେ ସମସ୍ତେ

ନିର୍ବୋଧ ଦିବସ ବୋଲି ଜାଣୁ । ନିର୍ବୋଧ ଦିବସରେ ଜନ୍ମ ହୋଇଥିଲେ କ'ଣ ହେବ, ଉଇଲିୟମ୍ କିନ୍ତୁ ଆଦୌ ନିର୍ବୁଦ୍ଧିଆ ନ ଥିଲେ । ଯେବେ ସେ ଯଦି ବୋକା ହୋଇଥାନ୍ତେ ତେବେ ଚିକିତ୍ସା ବିଜ୍ଞାନର ଉନ୍ନତି ଆଜି କେତେ ବର୍ଷ ପଛକୁ ଗ୍ଲଲିଯାଇଥାନ୍ତା ।

ଉଇଲିୟମ୍‌ଙ୍କର ବାପା ଥୋମାସ୍ ହାର୍ଭେ ଇଂଲଣ୍ଡର ଜଣେ ବଡ଼ ବ୍ୟବସାୟୀ ଥିଲେ । ଭଗବାନ ତ ଐଶ୍ୱର୍ଯ୍ୟରେ ଅଭାବ କରି ନ ଥା'ନ୍ତି, ତେଣୁ ଯେଉଁ ପୁଅ ଯାହା ପଢ଼ିବାକୁ ଇଚ୍ଛା କରୁଥିଲେ, ତାହାକୁ ସେହି ବିଭାଗରେ ସେ ଛାଡ଼ି ଦେଇଥିଲେ । ଉଇଲିୟମ୍ ଯେତେବେଳେ କେମ୍ବ୍ରିଜ୍ ସ୍କୁଲରୁ ମାଟ୍ରିକ୍ ପାଶ କଲେ, ସେତେବେଳେ ସେ ଡାକ୍ତରି ବିଦ୍ୟା ପଢ଼ିବାକୁ ଇଚ୍ଛା କଲେ । ତେଣୁ ବାପା ତାହାଙ୍କୁ ପାଦୁଆ ବିଶ୍ୱବିଦ୍ୟାଳୟରେ ଡାକ୍ତରି ପଢ଼ିବା ପାଇଁ ଭର୍ତ୍ତି କରିଦେଲେ ।

ଡାକ୍ତରି ପାଠ ପଢ଼ୁଥିବାବେଳେ ଶରୀରତତ୍ତ୍ୱ ଓ ଅସ୍ଥୋପଚାର-ତତ୍ତ୍ୱ ବିଷୟରେ ଉଇଲିୟମ୍‌ଙ୍କ ବୁଦ୍ଧି ଓ ବିଚକ୍ଷଣତା ଦେଖି ଅଧ୍ୟାପକମାନେ ବିସ୍ମିତ ହୋଇଯାଉଥିଲେ । ଇଟାଲୀ ଦେଶରେ ଥିବା ଏହି ପାଦୁଆ ମେଡ଼ିକାଲ୍ କଲେଜ ସେତେବେଳେ ଡାକ୍ତରି ଶିକ୍ଷା ପାଇଁ ପାଶ୍ଚାତ୍ୟ ଜଗତରେ ଖୁବ୍ ପ୍ରସିଦ୍ଧ ହୋଇଥିଲା । ୟୁରୋପର ବିଭିନ୍ନ ଅଞ୍ଚଳରୁ ମେଧାବୀ ଛାତ୍ରମାନେ ଯାଇ ସେଠାରେ ପାଠ ପଢ଼ୁଥିଲେ ।

ଅଧ୍ୟାପକ ଯାହା ପଢ଼ାନ୍ତି ସେତିକି ଜାଣି ହାର୍ଭେ ସନ୍ତୁଷ୍ଟ ହେଉ ନ ଥିଲେ । ପଢ଼ା ବିଷୟ ଶୁଆ ଭଳି ଘୋଷି ପାଶ୍ କରିବା ତାଙ୍କର ମାନ୍ତ-ବିରୁଦ୍ଧ ଥିଲା । ନିଜେ ପରୀକ୍ଷା କରି ସମସ୍ତ ବିଷୟରେ ସତ୍ୟାସତ୍ୟ ଜାଣିବାକୁ ସେ ଇଚ୍ଛା କରୁଥିଲେ ।

ଶରୀରତତ୍ତ୍ୱ ପଢ଼ାଯାଉଥିବା ଗୃହରେ ହୃଦ୍‌ଯନ୍ତ୍ର ଉପରେ ସେ ଯେଉଁ ପାଠ ଅଧ୍ୟାପକଙ୍କ ମୁହଁରୁ ଶୁଣୁଥିଲେ ତାହା ସତ କି ମିଛ ଜାଣିବା ପାଇଁ ବଜାରକୁ ଯାଇ ବଡ଼ ବଡ଼ ଜିଅନ୍ତା ମାଛ କିଣି ଆଣୁଥିଲେ ।

ସେହି ଜୀଅନ୍ତା ମାଛଙ୍କୁ ସବୁ ଘରେ ରଖି ସେସବୁ ମଲାପର୍ଯ୍ୟନ୍ତ ନିରୀକ୍ଷଣ କରୁଥିଲେ । ସେଗୁଡ଼ିକର ହୃଦ୍‌ଯନ୍ତ୍ର କ୍ରିୟା କିପରି ଖୋଲୁଛି ଓ ବନ୍ଦ ହେଉଛି, ତାହାକୁ ଅନୁଧ୍ୟାନ କରୁଥିଲେ । ଏହିପରି ପରୀକ୍ଷା କରୁ କରୁ ସେ ଜାଣିପାରିଲେ ଯେ ଅଧ୍ୟାପକ ହୃଦ୍‌ଯନ୍ତ୍ର କ୍ରିୟା ସମ୍ପର୍କରେ ଯାହା ପଢ଼ାଉଛନ୍ତି ତାହା ଆଦୌ ଠିକ୍ ନୁହେଁ ।

ପାଦୁଆ କଲେଜରୁ ଡାକ୍ତରି ଶାସ୍ତ୍ରରେ କୃତିତ୍ୱ ହାସଲ କରିବା ପରେ ପରେ ସେ ଇଂଲଣ୍ଡର ରାଜା ଷଷ୍ଠ ଏଡ଼୍‌ୱାର୍ଡ଼୍‌ଙ୍କର ଡାକ୍ତର ଭାବରେ ନିଯୁକ୍ତି ପାଇଲେ ।

ଚାକିରି ବି ମିଳିଲା । ପରେ ଘରସଂସାର କରିବା କଥା । ରାଜା ତାହାଙ୍କୁ ବିବାହ କରାଇଦେଲେ । ହାର୍ଭେ ଲଣ୍ଡନରେ ସବୁଦିନ ପାଇଁ ଘରୋଇ ଚିକିତ୍ସା ଆରମ୍ଭ କଲେ ।

ହାର୍ଭେଙ୍କର ମଧୁର ବ୍ୟବହାର ଏବଂ ରୋଗୀଙ୍କ ପ୍ରତି ଆନ୍ତରିକ ନିଷ୍ଠା ହେତୁ ସେ ଘରୋଇ ଚିକିତ୍ସା ଆରମ୍ଭ କରିବାର ବର୍ଷ କେତୋଟି ପରେ "ରୟାଲ୍ କଲେଜ ଅଫ୍ ଫିଜିସିଆନ୍‌ସ"ର ଫେଲୋ ଭାବରେ ନିର୍ବାଚିତ ହେଲେ । ଏହି କଲେଜର ଫେଲୋରୂପେ କେବଳ ବିଶିଷ୍ଟ ଡାକ୍ତରମାନଙ୍କୁ ସମ୍ମାନ ଦିଆଯାଇଥାଏ । ଡାକ୍ତର ହାର୍ଭେ ଏହି କଲେଜରେ ତିରିଶ ବର୍ଷ କାଳ ସାମୟିକ ଭାବରେ ଅଧ୍ୟାପନା କଲେ । ଶରୀରତତ୍ତ୍ୱ ଏବଂ ଅସ୍ତ୍ରୋପଚାରର ବିଜ୍ଞାନ ତାଙ୍କର ଅଧ୍ୟାପନାର ବିଷୟବସ୍ତୁ ଥିଲା ।

ହାର୍ଭେଙ୍କ ଦ୍ୱାରା ଆବିଷ୍କୃତ ରକ୍ତ ସଞ୍ଚାଳନ ପ୍ରକ୍ରିୟା ପ୍ରକାଶ ପାଇଲା ପୂର୍ବରୁ ବୈଜ୍ଞାନିକ ଗାଲେନ୍ ସେ ସମ୍ବନ୍ଧରେ ଯେଉଁ ତଥ୍ୟ ରଖି ଦେଇ ଯାଇଥିଲେ ତାହାକୁ ଡାକ୍ତରି ଛାତ୍ରମାନେ ପଢ଼ୁଥିଲେ । ହାର୍ଭେ "ରୟାଲ୍ କଲେଜ୍ ଅଫ୍ ଫିଜିସିଆନ୍‌ସ"ରେ ଅଧ୍ୟାପକରୂପେ ଯୋଗଦେଇ ସାରିଲା ପରେ ଛାତ୍ରାବସ୍ଥାରୁ ସେ ଅନୁଧ୍ୟାନ କରିଆସିଥିବା ହୃଦ୍‌ଯନ୍ତ୍ର କ୍ରିୟା ବିଷୟରେ ଗବେଷଣା ଚଳାଇବାକୁ ସୁବିଧା ପାଇଲେ । ଜୀଅନ୍ତା ମନୁଷ୍ୟର ଶରୀର କାଟି ତାହାର ହୃଦ୍‌ଯନ୍ତ୍ର ପରୀକ୍ଷା କରିବା

ସେତେବେଳେ କ'ଣ, କେତେବେଳେ ମଧ୍ୟ ସମ୍ଭବପର ନୁହେଁ । ତେଣୁ ସେ ଶ୍ରେଷ୍ଠ ଶ୍ରେଷ୍ଠ ପଶୁପକ୍ଷୀଙ୍କ ଉପରେ ତାଙ୍କର ପରୀକ୍ଷା ଆରମ୍ଭ କଲେ । ଅବଶ୍ୟ ଏହି ଗବେଷଣାରେ କୃତକାର୍ଯ୍ୟ ହେବାପାଇଁ ତାଙ୍କୁ ପଚିଶ ବର୍ଷ ସମୟ ଲାଗିଥିଲା ।

ହୃଦ୍‌ଯନ୍ତ୍ରଯୋଗେ ରକ୍ତ ସଞ୍ଚାଳନ ପ୍ରକ୍ରିୟାର ନୂତନ ତଥ୍ୟଟିକୁ ହାର୍ଭେ ଯେତେବେଳେ ପୁସ୍ତକ ଆକାରରେ ପ୍ରକାଶ କଲେ, ସେତେବେଳେ ଆନ୍ତର୍ଜାତିକ କ୍ଷେତ୍ରରେ ତାହାଙ୍କର ସୁନାମ ଯଥେଷ୍ଟ ବଢ଼ିଗଲା ।

ଡାକ୍ତର ହାର୍ଭେ ପ୍ରମାଣ କରି ଦେଖାଇଦେଲେ ଯେ ହୃଦ୍‌ଯନ୍ତ୍ର ରକ୍ତ ସଞ୍ଚାଳନର ପ୍ରଧାନ ଅଙ୍ଗ । ହୃତପିଣ୍ଡର କ୍ରିୟା ବନ୍ଦ ହୋଇଗଲେ ଶରୀରର ବିଭିନ୍ନ ଅଙ୍ଗକୁ ରକ୍ତ ଯୋଗାଣ ନ ହୋଇପାରି ମନୁଷ୍ୟର



ମୃତ୍ୟୁ ହୁଏ । ହୃତପିଣ୍ଡ ମାଂସପେଶୀରେ ନିର୍ମିତ ଏକ ଥଳୀ । ଏହାର ଆକାର ପାନ ପତ୍ର ଭଳି । ଏହାର ଚଉଡ଼ା ଅଂଶଟି ଦୁଇଟି କୋଠରୀରେ ଏବଂ ସରୁଆ ଅଂଶଟି ମଧ୍ୟ ଦୁଇଟି କୋଠରୀରେ ବିଭକ୍ତ । ଚଉଡ଼ା ଅଂଶର କୋଠରୀଦୁଇଟି ବାମ ଓ ଦକ୍ଷିଣ ଅଳିନ୍ଦ ଏବଂ ତଳଦୁଇଟି ବାମ ଓ ଦକ୍ଷିଣ ନିଳୟରୂପେ ପରିଚିତ । ଅଳିନ୍ଦ ଓ ନିଳୟ ଭିତରେ ପତଳା ମାଂସପେଶୀର ଦୁଇଟି ପ୍ରାଚୀର ଅଛି । ବାମ ଅଳିନ୍ଦ ଓ ଦକ୍ଷିଣ ଅଳିନ୍ଦ ଭିତରେ ଯେପରି ପଥ ନ ଥାଏ, ସେହିପରି ବାମ ଓ ଦକ୍ଷିଣ ନିଳୟ ମଧ୍ୟରେ ବାଟ ନ ଥାଏ । ବାମ ଅଳିନ୍ଦରୁ ବାମ ନିଳୟକୁ ଏବଂ ଦକ୍ଷିଣ ଅଳିନ୍ଦରୁ ଦକ୍ଷିଣ ନିଳୟକୁ ବାଟ ଥାଏ । ତାହା ପତଳା କପାଟିକା ଦ୍ୱାରା ବନ୍ଦ ହୋଇଥାଏ । ସେହି ପତଳା ପରଦାକୁ ଇଂରାଜୀରେ "ଭାଲ୍‌ଭ୍" କହନ୍ତି । ଅଳିନ୍ଦରୁ ଚାପ ସୃଷ୍ଟି ହେଲେ ନିଳୟରୁ ରକ୍ତ କ୍ଷରିତ ହୋଇଥାଏ । ନିଳୟରୁ ଚାପ ପାଇବାମାତ୍ରେ ଭାଲଭ୍ ସବୁ ବନ୍ଦ ହୋଇଯାଏ ଏବଂ ରକ୍ତ ଆସିବା ବନ୍ଦ ହୁଏ । ନିଳୟରୁ ରକ୍ତସବୁ ଧମନୀ ଦ୍ୱାରା ସଞ୍ଚାଳିତ ହୋଇଥାଏ ।




ହୃଦ୍‌ଯନ୍ତ୍ର

ଶରୀରର ସମସ୍ତ ରକ୍ତ ଯାଇ ଦକ୍ଷିଣ ଅଳିନ୍ଦରେ ପହଞ୍ଚେ ଏବଂ ସେଠାରୁ ଦକ୍ଷିଣ ନିଳୟକୁ ଯାଏ । ଦକ୍ଷିଣ ନିଳୟରୁ ତାହା ଫୁସ୍‌ଫୁସ୍‌କୁ

ସଞ୍ଚାଳିତ ହୁଏ । ଫୁସ୍‌ଫୁସ୍‌ରେ ରକ୍ତ ପରିଷ୍କୃତ ହୋଇ ପୁଣି ବାମ ଅଳିନ୍ଦକୁ ଫେରି ଆସେ ଏବଂ ସେଠାରୁ ବାମ ନିଳୟକୁ ଯାଏ । ବାମ ନିଳୟରୁ ପରିଷ୍କୃତ ରକ୍ତ ଧମନୀ ଦ୍ୱାରା ଦେହର ବିଭିନ୍ନ ଅଂଶକୁ ସଞ୍ଚାଳିତ ହୋଇଯାଏ ।

ହାର୍ଭେ ଏହି ରକ୍ତ ସଞ୍ଚାଳନ ପ୍ରକ୍ରିୟା ଆବିଷ୍କାର କରିବା ଫଳରେ ଚିକିତ୍ସା ଶାସ୍ତ୍ରରେ ଏକ ଶୃଙ୍ଖଳା ସୃଷ୍ଟି ହେଲା । ହାର୍ଭେ ତାଙ୍କର ଏହି ତଥ୍ୟ ଯେତେବେଳେ ପ୍ରକାଶ କଲେ, ଅଧିକାଂଶ ରୋଗୀ ତାଙ୍କୁ ପାଗଳ ବୋଲି ଭାବି ତାଙ୍କ ପାଖରୁ ଯାଇ ଅନ୍ୟତ୍ର ଚିକିତ୍ସିତ ହୋଇ-ଥିଲେ । ଅନେକ ସହକର୍ମୀ ମଧ୍ୟ ତାଙ୍କୁ ବିଦ୍ରୂପ କରିଥିଲେ ।

ଡାକ୍ତର ହାର୍ଭେ କିନ୍ତୁ କହିଥିଲେ "ମୁଁ ସତ୍ୟକୁ ଭଲପାଏ; ପ୍ରାଣୀମାନଙ୍କ ଦେହରେ ପରୀକ୍ଷା ଚଳାଇ ଯାହା ପାଇପାରିଛି, ତାହାକୁ ହିଁ ଅଭ୍ରାନ୍ତ ବୋଲି ଏବେ ସୁଦ୍ଧା କହୁଛି ।"

ଶେଷରେ ହାର୍ଭେଙ୍କ ଆବିଷ୍କାର ବିଶ୍ୱର ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ସବୁଦିନ ପାଇଁ ଅମର ହୋଇ ରହିଗଲା ।

ପୁପୁଲ୍ କହିଲା— ହାର୍ଭେ ତ ଗର୍ବରେ ଫୁଲି ଉଠିଥିବେ ?

ଅଜା କହିଲେ – ଜୀବନରେ ସଫଳତା ପାଇସାରି ହାର୍ଭେ ଆଦୌ ଗର୍ବିତ କିମ୍ବା ସନ୍ତୁଷ୍ଟ ହୋଇ ନ ଥିଲେ । ବଞ୍ଚିରହିବାର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ମୃତ ମଣିଷ ଏବଂ ଜୀବନ୍ତ ପଶୁପକ୍ଷୀମାନଙ୍କ ଶରୀର ବ୍ୟବଚ୍ଛେଦ କରୁଥିଲେ ।

ପୁପୁଲ୍ ପଚାରିଲା—ସେ କେବେ ପ୍ରାଣତ୍ୟାଗ କଲେ ଅଜା ?

ଅଜା କହିଲେ—ଷୋଳଶହ ସତାବନ ମସିହାରେ ଏହି ମହାନ୍ ପ୍ରତିଭାଙ୍କର ଜୀବନ ଦୀପ ଲିଭି ଯାଇଥିଲା ।

